# କୋଶଳବ୍ୟାସ : ନୀଳମାଧବ ପାଣିଗ୍ରାହୀ

ଲେଖକ :
ଶ୍ରୀ ଦୀପ୍ତିରଂଜନ ଶେଠ
ବାବୁବନ୍ଧ

ପ୍ରକାଶକ :
ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ
ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀ

KOSALA-VYASA : NILAMADHAB PANIGRAHI
*(a biography written by Sri Diptiranjan Seth, Babubandha)*
***Published by :*** Sj. Shriballava Panigrahi / Smt. Sunanda Panigrahi
Bhuttapada, Sambalpur, Odisha
***Printed at :*** **Optima offset prints**
201-A, 'Sreeniwas', Sutahat, Cuttack-1
First Edition : January, 2014
Price : Rs. 100/-

କୋଶଳ ବ୍ୟାସ- ନୀଳମାଧବ ପାଣିଗ୍ରାହୀ
ଲେଖକ : ଶ୍ରୀ ଦୀପ୍ତିରଞ୍ଜନ ଶେଠ
ବାବୁବନ୍ଧ, ଡାକଘର : କଳାମାଟି, ଭାୟା- ସି.ଏ. ଟିପିଲିମା
ଜି : ସମ୍ବଲପୁର-୭୬୮୦୨୫, (ଓଡ଼ିଶା)

ପ୍ରକାଶକ : ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ / ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀ
ଭୁଟାପଡ଼ା, ସମ୍ବଲପୁର, ଓଡ଼ିଶା ।

ମୁଦ୍ରଣ : ଅପ୍ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍
ସୂତାହାଟ, କଟକ-୭୫୩୦୦୧

ପ୍ରଥମ ସଂସ୍କରଣ : ୨୦୧୪, ଜାନୁଆରି
(ମୁଦ୍ରଣ ସଂଖ୍ୟା : ୫୦୦)

ମୂଲ୍ୟ : ଟ. ୧୦୦/-
(ପଲ୍‌ପ୍ କଭର୍)

# କୃତଜ୍ଞତା ଜ୍ଞାପନ

ଓଡ଼ିଆ ସାହିତ୍ୟର ଇତିହାସରେ ସ୍ୱର୍ଗତ ଶ୍ରୀଯୁକ୍ତ ନୀଳମାଧବ ପାଣିଗ୍ରାହୀ ଜଣେ ଲବ୍‌ଧ ପ୍ରତିଷ୍ଠ ସାହିତ୍ୟିକ, ଉଚ୍ଚ ପ୍ରତିଭା ସଂପନ୍ନ ଗବେଷକ, ଉଚ୍ଚକୋଟୀର ପ୍ରାବନ୍ଧିକ ଓ ସମାଲୋଚକ, ବ୍ୟାକରଣ ପ୍ରଣେତା, ଭାଷାବିଦ୍, କବି, ସଙ୍ଗୀତଜ୍ଞ, ସଙ୍ଗୀତ ବିଶାରଦ ଏବଂ ବହୁମୁଖୀ ପ୍ରତିଭାଶାଳୀ ସାରସ୍ୱତ ବ୍ୟକ୍ତିତ୍ୱ । ତରୁଣ ବୟସରୁ ସ୍ୱର୍ଗୀୟ ଶ୍ରୀଯୁକ୍ତ ପାଣିଗ୍ରାହୀ ମହାଶୟ ସାହିତ୍ୟ ସାଧନାରେ ନିମଗ୍ନ । ସେକାଳର "ଶଙ୍ଖ", "ଝଙ୍କାର", "କୋଣାର୍କ" ତଥା "ପାଞ୍ଚଜନ୍ୟ" ପ୍ରଭୃତି ସାହିତ୍ୟ ପତ୍ରିକାରେ ତାଙ୍କର ବହୁ ଗବେଷଣାମୂଳକ ଦୀର୍ଘ ପ୍ରବନ୍ଧ ଓ ସମାଲୋଚନା ପ୍ରକାଶିତ ହୋଇ ଓଡ଼ିଶାର ସହୃଦୟ ପାଠକ-ପାଠିକାମାନଙ୍କ ନିକଟରେ ସେ ଯେପରି ପ୍ରିୟ ଓ ପରିଚିତ ହୋଇଥିଲେ, ସେହିପରି ପୂଜ୍ୟ ଓ ନମସ୍ୟ । ଏହି ବାଣୀପୁତ୍ରଙ୍କ ମହାର୍ଘଅର୍ଘ୍ୟ ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ କରିଛି ମହନୀୟ ଓ ପବିତ୍ର ।

ନୀଳମାଧବଙ୍କ ଜୀବନ କାହାଣୀ ଓ ସାହିତ୍ୟିକ ପ୍ରତିଭା ଆମ୍ଭମାନଙ୍କ ପାଇଁ ଯେପରି ଶିକ୍ଷାପ୍ରଦ ସେହିପରି ଅନୁକରଣୀୟ, ଅନୁସରଣୀୟ ଓ ବହୁ ଉପାଦେୟ ଅଟେ । ତାଙ୍କ ଜୀବନର ଅଳ୍ପକିଛି ଉପାଦାନ ଓ ସୃଷ୍ଟି ପ୍ରତ୍ୟୟକୁ ନେଇ ଖଣ୍ଡିଏ ଜୀବନୀ ପୁସ୍ତକ ପ୍ରସ୍ତୁତ କରିଛି । ଏହି ଜୀବନୀ ପୁସ୍ତକ ଖଣ୍ଡିକ ନୀଳମାଧବ ପାଣିଗ୍ରାହୀଙ୍କ ଶ୍ରଦ୍ଧାଶୀଳ-ସହୃଦୟ ପାଠକ-ପାଠିକାମାନଙ୍କୁ କିଞ୍ଚିତ୍ ଆନନ୍ଦ ଦେବ ବୋଲି ଆଶା ଓ ବିଶ୍ୱାସ ।

ନୀଳମାଧବ ପାଣିଗ୍ରାହୀଙ୍କ ସମ୍ପର୍କରେ ଖଣ୍ଡିଏ ଜୀବନୀ ପୁସ୍ତକ ଲେଖିବାପାଇଁ ପ୍ରଫେସର ଶ୍ରୀ ମୀନକେତନ ପୁରୋହିତ ହିଁ ସର୍ବପ୍ରଥମେ ମତେ ପ୍ରେରଣା ଦେଇଥିଲେ । ପ୍ରଫେସର ପୁରୋହିତ ପଣ୍ଡିତ ନୀଳମାଧବ ପାଣିଗ୍ରାହୀଙ୍କ ସମ୍ବନ୍ଧରେ ବହୁ ଗୁରୁତ୍ୱପୂର୍ଣ୍ଣ ସୂଚନା ପ୍ରଦାନ କରିବା ସଙ୍ଗେ ସଙ୍ଗେ ଏହି ଜୀବନୀ ଉପରେ ଗୋଟିଏ ମୁଖବନ୍ଧ ମଧ୍ୟ ଲେଖି ଦେଇଛନ୍ତି । ତାଙ୍କୁ ନମସ୍କାର କରୁଛି । ପୁସ୍ତକର ପ୍ରସ୍ତୁତି କାଳରେ ବିଭିନ୍ନ ପୁସ୍ତକ, ପତ୍ରିକା ତଥା ସମକାଳୀନ କେତେକ ଦୁଷ୍ପ୍ରାପ୍ୟ ରଚନାବଳୀର ଜେରକ୍ସ କପି ଯୋଗାଇ ଦେବାରେ ଶ୍ରୀଯୁକ୍ତ ପ୍ରସନ୍ନକୁମାର ଦାଶ (ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ରାଣା ପ୍ରତାପ ହାଇସ୍କୁଲ, ବରଗଡ଼)ଙ୍କ ସହଯୋଗ

ତଥା ଉଚିତ୍ ଓ ମୂଲ୍ୟବାନ୍ ପରାମର୍ଶ ଆଜୀବନ ଭୁଲିବାର ନୁହେଁ । ତାଙ୍କୁ ହୃଦୟର ଗଭୀରତମ ପ୍ରଦେଶରୁ ସଭକ୍ତି ପ୍ରଣାମ ଜଣାଉଛି । ସେହିପରି ବିଭିନ୍ନ ସମୟରେ, ବିଭିନ୍ନ ବିଷୟ ଉପରେ ମତେ ତଥ୍ୟ ଯୋଗାଇବାରେ ଯେଉଁମାନେ ଅକୁଣ୍ଠ ସାହାଯ୍ୟ କରିଛନ୍ତି, ସେମାନେ ହେଲେ ପ୍ରଫେସର ହୃଦମଣି ପ୍ରଧାନ (ବରଗଡ଼), ଗବେଷକ ଶ୍ରୀଯୁକ୍ତ ଦେବେନ୍ଦ୍ରକୁମାର ଦାଶ, ଡକ୍ଟର ଗୌରାଙ୍ଗଚରଣ ଦାଶ, ଡକ୍ଟର ଫଣୀନ୍ଦ୍ରଭୂଷଣ ନନ୍ଦ, ପ୍ରଫେସର ଡକ୍ଟର ବାଉରୀବନ୍ଧୁ କର, ଡକ୍ଟର ଦିଲୀପ କୁମାର ପାଢ଼ୀ, ଅଧ୍ୟାପକ ଡ.ଶ୍ୟାମସୁନ୍ଦର ଧର, ଅଧ୍ୟାପକ ଡ.ରଘୁନାଥ ମେହେର, ଏବଂ ଶ୍ରୀଯୁକ୍ତ ପ୍ରଭାତ କୁମାର ପାଣିଗ୍ରାହୀ (ଗୁଲୁଣ୍ଡା) । ସମସ୍ତଙ୍କୁ ନମସ୍କାର ଜଣାଉଛି ।

ଏଥିରେ ମୁଁ ବ୍ୟବହାର କରିଥିବା ଉପାଦାନ ଗୁଡ଼ିକ ମୁଖ୍ୟତଃ 'ଉତ୍କଳ ସାହିତ୍ୟ ସମାଜ'ର 'ଉତ୍କଳ ଗୌରବ ମଧୁସୂଦନ ପାଠାଗାର' 'ଓଡ଼ିଶାରାଜ୍ୟ ଅଭିଲେଖାଗାର' (ଭୁବନେଶ୍ୱର), 'ଆଞ୍ଚଳିକ ଅଭିଲେଖାଗାର' (ସମ୍ବଲପୁର) 'ସମ୍ବଲପୁର ବିଶ୍ୱବିଦ୍ୟାଳୟ ପାଠାଗାର' (ଜ୍ୟୋତିବିହାର, ବୁର୍ଲା), 'ଗଙ୍ଗାଧର ମେହେର କଲେଜ ପାଠାଗାର' (ସମ୍ବଲପୁର) ଏବଂ 'ଜିଲ୍ଲା ପାଠାଗାର ସମ୍ବଲପୁର'ରୁ ସଂଗୃହୀତ । ପୁସ୍ତକଟିର ଆଶୁ ପ୍ରକାଶନ ଦିଗରେ ଶ୍ରୀଯୁକ୍ତ ଶ୍ରୀବଲ୍ଲଭ ପାଣିଗ୍ରାହୀ, ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀଙ୍କ ଉତ୍ସାହଦାନ ଏକାନ୍ତ ଉଲ୍ଲେଖଯୋଗ୍ୟ । କବି ନୀଳମାଧବଙ୍କ ଦୁଇ ଉତ୍ତରାଧିକାରୀଙ୍କୁ ଭକ୍ତିପୂର୍ଣ୍ଣ ନମସ୍କାର କରୁଛି । ''କୋଶଳବ୍ୟାସ – ନୀଳମାଧବ ପାଣିଗ୍ରାହୀ'' ଶୀର୍ଷକ ଗ୍ରନ୍ଥ ଖଣ୍ଡିକ ଓଡ଼ିଶାର ସହୃଦୟ ପାଠକ-ପାଠିକା ମାନଙ୍କଦ୍ୱାରା ଆଦୃତ ହେବ ବୋଲି ଆଶା ଓ ବିଶ୍ୱାସ ରହିଲା ।

ବାବୁବନ୍ଧ
ତା ୧୬-୧-୨୦୧୪
(ପୌଷପୂର୍ଣ୍ଣିମା)
ଗୁରୁବାର

ବିନୀତ
ଶ୍ରୀ ଦୀପ୍ତିରଞ୍ଜନ ଶେଠ

—

# ମୁଖବନ୍ଧ

ଶ୍ରଦ୍ଧେୟ ଦୀପ୍ତିରଞ୍ଜନ ଶେଠଙ୍କ ରଚିତ ''କୋଶଳ ବ୍ୟାସ – ନୀଳମାଧବ ପାଣିଗ୍ରାହୀ''ର ପାଣ୍ଡୁଲିପି ପାଠକରି ସ୍ମୃତି ଓ ଅନୁଭୂତିର ଜୁଆରରେ ଭାସିଗଲି, ଆନନ୍ଦରେ ବିଭୋର ହୋଇଗଲି । ପୌତ୍ର–ପ୍ରତିମ ଦୀପ୍ତିରଞ୍ଜନ ମୁଖବନ୍ଧ ଲେଖିବାପାଇଁ ମୋତେ ଅନୁରୋଧ କରିଛନ୍ତି । କଲ୍ୟାଣୀୟ ପ୍ରାକ୍ତନ ସାଂସଦ ମାନ୍ୟବର ଶ୍ରୀବଲ୍ଲଭ ପାଣିଗ୍ରାହୀ ଲେଖକଙ୍କ ଅନୁରୋଧକୁ ସମର୍ଥନ କରିଛନ୍ତି । ଶ୍ରଦ୍ଧା ଛଳଛଳ ଅନୁରୋଧକୁ ଏଡ଼ି ନପାରି ହାତରେ ଲେଖନୀ ଧରିଛି ସିନା ଲେଖନୀ ଚାଳନା କରିବା ପାଇଁ ସାହସ ହେଉ ନାହିଁ । ଏହି ଅନବଦ୍ୟ ଜୀବନୀର ମୁଖବନ୍ଧ ଲେଖିବାର ସାମର୍ଥ୍ୟ ମୋର ନାହିଁ ।

ଡ.ନୀଳମାଧବ ପାଣିଗ୍ରାହୀ ପାରିବାରିକ ସମ୍ପର୍କରେ ମୋର ଜ୍ୟେଷ୍ଠ ସଢୁ ଅର୍ଥାତ୍ ପୂଜ୍ୟ ଜ୍ୟେଷ୍ଠଭ୍ରାତା । ସେ ଏକ ବହୁମୁଖୀ ପ୍ରତିଭା । ତାଙ୍କ ପ୍ରତିଭାର ସର୍ବାପେକ୍ଷା ଅଧିକ ଚିତ୍ତାକର୍ଷକ ଦିଗ ହେଉଛି – ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତ ରାଜ୍ୟରେ ତାଙ୍କର ଗଭୀର ପ୍ରବେଶ । ମୁଁ ଶାସ୍ତ୍ରୀୟ ସଙ୍ଗୀତ ସାଗରରେ ଅବଗାହନ କରି ନାହିଁ । ସଙ୍ଗୀତ ସାଗରର ଅତଳ ଗର୍ଭରୁ ମଣିମୁକ୍ତା ଆହରଣ କରି ନାହିଁ । ବେଳାଭୂମିରେ ବିଚରଣ କରି ଉପଳଖଣ୍ଡ ମାତ୍ର ସଂଗ୍ରହ କରିଛି । ସମ୍ବଲପୁର ଅଞ୍ଚଳର ପାରମ୍ପରିକ ଲୋକଗୀତ, ଲୋକନୃତ୍ୟ, ଲୋକବାଦ୍ୟ ଅର୍ଥାତ୍ ଲୋକସଙ୍ଗୀତ ଭିତରେ ମଧ୍ୟ ମୋର ପ୍ରବେଶ ଅତି ଅଗଭୀର । ତେଣୁ କେଉଁ ସାହସରେ, କେଉଁ ମାପକାଠିରେ ଜ୍ୟେଷ୍ଠଭ୍ରାତାଙ୍କ ଅକଳନୀୟ ପ୍ରତିଭାର ଆକଳନ କରିବି, ଅଚିନ୍ତନୀୟ ବ୍ୟକ୍ତିତ୍ୱର ମୂଲ୍ୟାୟନ କରିବି ?

କେବଳ ପଶ୍ଚିମ ଓଡ଼ିଶାର ନୁହେଁ ସାରା ଓଡ଼ିଶାର ଏପରିକି ସାରା ଭାରତର ସଙ୍ଗୀତ ଆକାଶରେ ନୀଳମାଧବ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ତାଙ୍କ ରଚିତ ''ଭାରତୀୟ ସଙ୍ଗୀତ'', ''ସଙ୍ଗୀତ ସମାର୍ଜନୀ'', ''ଜୟଦେବଙ୍କ ଗୀତଗୋବିନ୍ଦ'', ''ଗୀତଗୋବିନ୍ଦର ସ୍ୱରଲିପି'', ''ସଙ୍ଗୀତ କଳ୍ପଲତିକା'', ''ସଙ୍ଗୀତ କୌମୁଦୀ'', ''ଗୀତ ପ୍ରକାଶ'' ଶାସ୍ତ୍ରୀୟସଙ୍ଗୀତ ଭଣ୍ଡାରର ଏକ ଏକ ଅମୂଲ୍ୟରତ୍ନ । ଓଡ଼ିଶାରେ ଓଡ଼ିଆ ଭାଷାରେ ଅସଂଖ୍ୟ ଗ୍ରନ୍ଥରଚିତ ଓ ପ୍ରକାଶିତ ହୋଇଛି, ଏବେ ମଧ୍ୟ ହେଉଛି । ମାତ୍ର ନୀଳମାଧବଙ୍କ ସଙ୍ଗୀତ ଶାସ୍ତ୍ର ଅନନ୍ୟ । ତାଙ୍କ ସଙ୍ଗୀତ ଶାସ୍ତ୍ରର ମୌଳିକତା ଓ ପ୍ରାମାଣିକତା ସର୍ବଜନ ବିଦିତ ଓ ସର୍ବଜନ ସମାଦୃତ । ସୁର–ସାଧକ

ନୀଳମାଧବ ପୂର୍ବସୂରୀମାନଙ୍କ ପ୍ରବର୍ତ୍ତିତ ସୁର–ତାଳ–ଲୟ ଆଦି ଉପାଦାନକୁ ପରୀକ୍ଷା–ନିରୀକ୍ଷା କରି ଧ୍ୱନି, ଛନ୍ଦ, ମାତ୍ରା, ଯମକ, ଆଳାପ, ତାନ, ବୋଲତାନରେ ଥିବା ଦୋଷ ଦୁର୍ବଳତା ସବୁକୁ ଦର୍ଶାଇଛନ୍ତି । ଶାସ୍ତ୍ର–ସମ୍ମତ ସାଙ୍ଗୀତିକ ସ୍ୱର–ତାଳ–ଧ୍ୱନି–ଛନ୍ଦ ସଂଯୋଜନା କରିଛନ୍ତି । ସଂସ୍କୃତ ସଙ୍ଗୀତର ଗୁରୁ–ଲଘୁ–ସ୍ୱର ଏକମାତ୍ରିକ, ଦ୍ୱିମାତ୍ରିକ ଧ୍ୱନି ଓ ଶବ୍ଦ ଛନ୍ଦର ସାର୍ଥକ ଓ ସାଙ୍ଗୀତିକ ପ୍ରୟୋଗ କରିଛନ୍ତି । ଶ୍ରୀଜୟଦେବଙ୍କ ଗୀତଗୋବିନ୍ଦର ସମସ୍ତ ପ୍ରବନ୍ଧର ସ୍ୱରଲିପି ରଚନା କରିଛନ୍ତି । ସୁରମଣି ରଘୁନାଥ ପାଣିଗ୍ରାହୀ ସେହି ସ୍ୱର–ଲିପି ଅନୁସରଣରେ ଗୀତଗୋବିନ୍ଦ ଗାନକରି ସମଗ୍ର ବିଶ୍ୱର ବିଦଗ୍ଧ ଓ ବିମୁଗ୍ଧ ଶ୍ରୋତାମାନଙ୍କ ମନୋରଞ୍ଜନ ଓ ପ୍ରାଣସ୍ପନ୍ଦନ କରି ପାରୁଥିଲେ ।

କବିଚନ୍ଦ୍ର କାଳୀଚରଣଙ୍କ ନିଷ୍ପାପର ଉଦ୍ୟମରେ ଓଡ଼ିଶୀନୃତ୍ୟ ଶାସ୍ତ୍ରୀୟ ନୃତ୍ୟର ମାନ୍ୟତା ଓ ମର୍ଯ୍ୟାଦା ପ୍ରାପ୍ତହୋଇ ଭାରତନାଟ୍ୟମ୍, କଥକ୍ ଆଦି ଶାସ୍ତ୍ରୀୟ ନୃତ୍ୟକୁ ପଛରେ ପକାଇ ସାରା ବିଶ୍ୱରେ ଚହଳ ସୃଷ୍ଟି କରି ପାରିଛି । ମାତ୍ର ଓଡ଼ିଶୀ ସଙ୍ଗୀତ ଏ ପର୍ଯ୍ୟନ୍ତ ଶାସ୍ତ୍ରୀୟ ସଙ୍ଗୀତର ମାନ୍ୟତା ଓ ମର୍ଯ୍ୟାଦା ପ୍ରାପ୍ତ ହୋଇ ନାହିଁ । ଆମ ଗହଣରେ ଏବେ ସୁର–ସାଧକ ନୀଳମାଧବ ନାହାନ୍ତି କି ସୁରମଣି ରଘୁନାଥ ନାହାନ୍ତି । ଓଡ଼ିଶୀ ସଙ୍ଗୀତ, ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ସଙ୍ଗୀତ ସହିତ କିପରି ପ୍ରତିଯୋଗିତା କରିପାରିବ, କିପରି ଶାସ୍ତ୍ରୀୟ ସଙ୍ଗୀତର ମାନ୍ୟତା ପାଇ ପାରିବ ? ଏହି ପରିପ୍ରେକ୍ଷୀରେ ସଙ୍ଗୀତ–ସାଧକ ଶାନ୍ତନୁ ମହାପାତ୍ର ଓ ନୀଳମାଧବ ପାଣିଗ୍ରାହୀଙ୍କ ସହିତ ମୋର ଏକ ସାକ୍ଷାତ୍‌କାର ଓ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମର ସାରାଂଶ ଏଠାରେ ଉପସ୍ଥାପନ କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ଅନଗୁଳରେ ଆୟୋଜିତ ଏକ ଭବ୍ୟ ଓ ମନୋଜ୍ଞ ସଙ୍ଗୀତ ଆସରରେ ସଙ୍ଗୀତ–ବିଶାରଦ ଶାନ୍ତନୁ ମହାପାତ୍ରଙ୍କୁ ମୁଁ ପଚାରିଲି, "ହେ ମହାଶୟ, ଆପଣଙ୍କ ପରି ଶାସ୍ତ୍ରୀୟ ସଙ୍ଗୀତ ବିଶାରଦ ଥାଉଁ ଥାଉଁ ଓଡ଼ିଶୀ ସଙ୍ଗୀତ କାହିଁକି ଏ ପର୍ଯ୍ୟନ୍ତ ଶାସ୍ତ୍ରୀୟ ସଙ୍ଗୀତର ମାନ୍ୟତା ପ୍ରାପ୍ତ ହୋଇନାହିଁ ?" ଉତ୍ତରରେ ଶାନ୍ତନୁ ବାବୁ କହିଲେ, "ଓଡ଼ିଶାର ସଙ୍ଗୀତପ୍ରେମୀ ଜନତା ଓଡ଼ିଶୀ ସଙ୍ଗୀତ ଶୁଣିବାକୁ ଚାହୁଁ ନାହାନ୍ତି; କଣ୍ଠଶିଳ୍ପୀମାନେ ଓଡ଼ିଶୀ ଗୀତ ଗାଉ ନାହାନ୍ତି; ସୁର–ସାଧକ ମାନେ ରକ୍ଷଣଶୀଳତା ପରିହାର କରି ଓଡ଼ିଶୀ ଗୀତରେ ନୂତନ ଶାସ୍ତ୍ରୀୟ ସୁର ବା ରାଗ ସଂଯୋଜନା କରୁ ନାହାନ୍ତି ।" ସମ୍ବଲପୁର ଲୋକମହୋତ୍ସବରେ ଆୟୋଜିତ "ସଙ୍ଗୀତ କଳାର ଶାସ୍ତ୍ରୀୟତା" ଶୀର୍ଷକ ଏକ ଉଚ୍ଚମାନର ଆଲୋଚନାଚକ୍ରରେ ମୁଁ ସେହି ପ୍ରଶ୍ନ ଓଡ଼ିଶାର ବରେଣ୍ୟ ସୁର–ସାଧକ ଡକ୍ଟର ନୀଳମାଧବ ପାଣିଗ୍ରାହୀଙ୍କୁ ପଚାରିଥିଲି । ଉତ୍ତରରେ

ଡ.ପାଣିଗ୍ରାହୀ ମୁଖମଣ୍ଡଳରେ ଈଷତ୍ କ୍ରୋଧ ଓ ନୈରାଶ୍ୟର ଭାବ ସୂଚାଇ କହିଥିଲେ, ''ଭୈୟା, ହେତା ଯେ ନାଇଁ ହୁଏ,'' ମୁଁ ମୋ ପ୍ରଶ୍ନର ସଠିକ୍ ଉତ୍ତର ପାଇଗଲି । ସମଝଦାର୍ କୋ ଇସାରା କାଫି ନୁହେଁ କି ? ଓଡ଼ିଶୀ ସଙ୍ଗୀତରେ କିଛି ତ୍ରୁଟି ଅଛି, କିଛି ଅଭାବ ଅଛି । ଡ.ନୀଳମାଧବ ପାଣିଗ୍ରାହୀ ହିନ୍ଦୁସ୍ଥାନୀ-କର୍ଣ୍ଣାଟକୀ-ଓଡ଼ିଶୀ ସଙ୍ଗୀତ ପଦ୍ଧତିର ଏକ ତୁଳନାତ୍ମକ ଅଧ୍ୟୟନ କରି ଗବେଷଣା-ଲବ୍ଧ ତତ୍ତ୍ୱ ସାହାଯ୍ୟରେ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ସଙ୍ଗୀତର ଉଚ୍ଚତାକୁ ଉନ୍ନୀତ କରି ପାରିଥାନ୍ତେ । ଏହା ତାଙ୍କର ଏକ ସ୍ୱପ୍ନ ଥିଲା । ମାତ୍ର ଜୀବଦ୍ଦଶାରେ ଏହି ସ୍ୱପ୍ନ ସାକାର ହୋଇ ପାରିଲା ନାହିଁ । ମାତ୍ର ଅନାଗତ ଭବିଷ୍ୟତର କେଉଁ ଏକ ଶୁଭ ଲଗ୍ନରେ ସେହି ସ୍ୱପ୍ନ ନିଶ୍ଚୟ ସାକାର ହେବ । ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ରଚିତ ୪୬୫ ପୃଷ୍ଠାର ''ଓଡ଼ିଆ ଭାଷାର ଶାସ୍ତ୍ରୀୟତା'' ଶୀର୍ଷକ ପ୍ରବନ୍ଧ ଯେପରି ନିକଟ ଭବିଷ୍ୟତରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ଆଣିଦେବ, ଡକ୍ଟର ନୀଳମାଧବ ପାଣିଗ୍ରାହୀଙ୍କ ଗବେଷଣା-ଲବ୍ଧ-ତତ୍ତ୍ୱ ଓ ତାତ୍ତ୍ୱିକ ବିଶ୍ଳେଷଣ ଓଡ଼ିଶୀ ସଙ୍ଗୀତ ଶାସ୍ତ୍ରୀୟ ସଙ୍ଗୀତର ମାନ୍ୟତା ଓ ମର୍ଯ୍ୟାଦା ପ୍ରଦାନ କରିବ ।

ସମ୍ବଲପୁରୀ-କୋଶଲୀ ଭାଷା ପ୍ରାୟ ଏକ ହଜାର ବର୍ଷ ଅବଧିର ଏକ କଥିତ ଭାଷା । ପଶ୍ଚିମ ଓଡ଼ିଶାର ଏବଂ ଓଡ଼ିଶାର ପଶ୍ଚିମ ଦିଗନ୍ତ ବିଚ୍ଛିନ୍ନାଞ୍ଚଳର ଏକ କୋଟିରୁ ଅଧିକ ଲୋକଙ୍କ ଦୈନନ୍ଦିନ ଜୀବନର ଭାଷା । ପଶ୍ଚିମ ଓଡ଼ିଶାର ମାତୃଭାଷା । ଏହି ଭାଷାର ଏକ ଅଲିଖିତ ସାହିତ୍ୟ ଥିଲା । ଲୋକଗୀତ, ଲୋକକଥା, ଢଗଢମାଳି, ଢଗ ରାମାୟଣ, ଢଗ ମହାଭାରତ ଆଦି ଲୋକ ଭାଷାର ଶାସ୍ତ୍ରରେ ସମୃଦ୍ଧ ଏହି ଭାଷା । ଊନବିଂଶ ଶତାବ୍ଦୀର ଶେଷପାଦରେ ଏହି କଥିତଭାଷା ଲିଖିତ ଭାଷାର ରୂପ ନେଲା । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ବାଲାଜୀ ମେହେର ''ଗୁଂଡ଼ିଆ'' କବିତା, କପିଳ ମହାପାତ୍ର ''ଢଗ ରାମାୟଣ'', ଚୈତନ୍ୟ ପୁରୋହିତ ''ଢଗ ମହାଭାରତ'', ସତ୍ୟ ନାରାୟଣ ବହିଦାର ''ସମ୍ବଲପୁରୀ ଭାଷାର ବ୍ୟାକରଣ'', ଖଗେଶ୍ୱର ଶେଠ ''ପଏର୍ଚ୍ଛାସତୀ'' କାବ୍ୟ, ଇନ୍ଦ୍ରମଣି ସାହୁ ''କୋଶଲୀ ରାମାୟନ୍'', ହେମଚନ୍ଦ୍ର ଆଚାର୍ଯ୍ୟ ''ରାମ୍‌ରାହା'' ରଚନା କଲେ । ଶଶିଭୂଷଣ ମିଶ୍ର ଶର୍ମା (ବୁଢ଼ାମାଷ୍ଟ୍ରେ), ପ୍ରୟାଗଦତ୍ତ ଯୋଷୀ, ମଙ୍ଗଲୁ ଚରଣ ବିଶ୍ୱାଳ, ମିତ୍ରଭାନୁ ଗୌନ୍ତିଆ, ରାଜାରାମ ମେହେର, ଶଶାଙ୍କ ଶେଖର ପଣ୍ଡା, କୁମାର ହସନ, ହଳଧର ନାଗ, ଧନପତି ମହାପାତ୍ର, ଅଟଳବିହାରୀ ପଣ୍ଡା, ଗୋରେଖନାଥ ସାହୁ, ଭବାନୀଶଙ୍କର ପ୍ରଧାନ, ପ୍ରଫୁଲ୍ଲକୁମାର ତ୍ରିପାଠୀ, ସତ୍ୟନାରାୟଣ ଠାକୁର, ମୋହନ ସାହୁ, ହୃଦମଣି ପ୍ରଧାନ, ଶ୍ୟାମସୁନ୍ଦର ଧର,

ଦ୍ୱାରିକାନାଥ ନାୟକ, ଅଶୋକ ପୂଜାରୀ, ହରେକୃଷ୍ଣ ପୂଜାରୀ, ଶରତଚନ୍ଦ୍ର ପୂଜାରୀ, ମୀନକେତନ ପୁରୋହିତ, ଇନ୍ଦ୍ରମଣି ବାରିକ, କେଶ ରଞ୍ଜନ ପ୍ରଧାନ, ଅଶୋକ ବହିଦାର (ଓ ଆହୁରି ଅନେକ) ଆଦି ବହୁ କବି, ଓ ଲେଖକ, ସଂଗ୍ରାହକ ଓ ସଂପାଦକ ସମ୍ବଲପୁରୀ ଭାଷାରେ କାବ୍ୟ-କବିତା, ଗଳ୍ପ-ଉପନ୍ୟାସ, ନାଟକ-ନାଟିକା, ଶାସ୍ତ୍ର-ପୁରାଣ, ଆଲୋଚନା-ସମୀକ୍ଷା, ସଂଗ୍ରହ ଓ ସମ୍ପାଦନା, ବ୍ୟାକରଣ-ଅଭିଧାନ ରଚନା କଲେ । ଗୀତା-ଭାଗବତ, ଉପନିଷଦ୍‌ର ଅନୁବାଦ କଲେ । ମାତ୍ର ମୂଳ ସଂସ୍କୃତ ''ମହାଭାରତ'' ଗ୍ରନ୍ଥର ସମ୍ବଲପୁରୀ ଭାଷାନୁବାଦ କରିବା ପାଇଁ ଡକ୍ଟର ନୀଳମାଧବ ପାଣିଗ୍ରାହୀଙ୍କଠାରୁ ଆଉ ଅଧିକ ଯୋଗ୍ୟ ଲେଖକ କିଏ ଥିଲେ ? ଯେଉଁ କବି ମୂଳଭାଷା ଓ ଅନୂଦିତ ଭାଷା ଅର୍ଥାତ୍ ଉଭୟ ଭାଷାରେ ପାରଦର୍ଶିତା-ଅର୍ଜନ କରିଥିବେ ସେ ସିନା ନିର୍ଭୁଲ୍ ଭାବରେ ଅନୁବାଦ କରିପାରିବେ । ଡକ୍ଟର ନୀଳମାଧବ ଏକାଧାରରେ ଜଣେ କବି ଓ କୋବିଦ । ସଂସ୍କୃତ ସାହିତ୍ୟରେ, ପ୍ରାଚୀନ ଓଡ଼ିଆ ସାହିତ୍ୟରେ, ବଙ୍ଗଳା, ହିନ୍ଦୀ, ଏବଂ ଇଂରାଜୀ ଭାଷାରେ ପାରଦର୍ଶିତା ଅର୍ଜନ କରିଥିଲେ । ତେଣୁ ମହାଭାରତ ପୁରାଣକୁ ଶୁଦ୍ଧ ସମ୍ବଲପୁରୀ କୋଶଲୀ ଭାଷାରେ ସାବଲୀଳ ଶୈଳୀରେ ସମ୍ବଲପୁରୀ ଭାଷାର ଶବ୍ଦ ଚାତୁରୀ, ଛନ୍ଦମାଧୁରୀ ଓ ସୁର ଲହରୀ ପ୍ରୟୋଗ କରି ଅନୁବାଦ କଲେ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏବଂ ଓଡ଼ିଶା ସରକାର ଏ ପର୍ଯ୍ୟନ୍ତ ଓଡ଼ିଶାର ପଶ୍ଚିମାଞ୍ଚଳ ଓ ପଶ୍ଚିମ ଦିଗନ୍ତ, ବିଚ୍ଛିନାଞ୍ଚଳର ଦେଢ଼କୋଟି ଅଧିବାସୀଙ୍କର ମାତୃଭାଷାକୁ ଏକ ସ୍ୱୟଂସମ୍ପୂର୍ଣ୍ଣ ମାନକଭାଷାର ସ୍ୱୀକୃତି ଓ ମାନ୍ୟତା ଦେଇନାହାନ୍ତି । ମାତ୍ର ନିକଟ ଭବିଷ୍ୟତରେ ସମ୍ବଲପୁରୀ-କୋଶଲୀ ଏକ ମାନକ ଭାଷାର ମର୍ଯ୍ୟାଦା ପ୍ରାପ୍ତ ହେବ । ଭାରତବର୍ଷର ଏକମାତ୍ର ପ୍ରଦେଶ ଓଡ଼ିଶା ଯେଉଁ ପ୍ରଦେଶରେ ଓଡ଼ିଆ ଭାଷାପରି ଏକ ଶାସ୍ତ୍ରୀୟ ଭାଷାରେ ଏବଂ ସମ୍ବଲପୁରୀ-କୋଶଲୀ ଭାଷାପରି ଦ୍ୱିତୀୟ ମାନକ ଭାଷାରେ ସମୃଦ୍ଧ ସାହିତ୍ୟ ଗଢ଼ି ଉଠିବ । ମହାଭାରତ ପୁରାଣ ପାଠକରି ପଶ୍ଚିମ ଓଡ଼ିଶାର ଆବାଳବୃଦ୍ଧବନିତା ସମ୍ମୋହିତ ହେଲେ, ରଚୟିତା ନୀଳମାଧବ ପାଣିଗ୍ରାହୀଙ୍କୁ ଶ୍ରଦ୍ଧାରେ ଓ ଭକ୍ତିରେ ''କୋଶଳ-ବ୍ୟାସ'' ଉପାଧିରେ ଭୂଷିତ କଲେ ।

ସମ୍ବଲପୁରୀ ସାହିତ୍ୟକୁ ନୀଳମାଧବଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ''ମହଗା ଆଉର୍‌ମହୁ'' ଏବଂ ''ପାଣିଗ୍ରାହୀ ପଦ୍ୟାବଳି'' ରଚନା କରି କବି ନୀଳମାଧବ ଏହି କଥିତ ଭାଷାର ଅନ୍ତର୍ନିହିତ ଶକ୍ତି ଏବଂ ଚିନ୍ତା-ଚେତନା-ଭାବ-କଳ୍ପନାର ପ୍ରକାଶ କ୍ଷମତା ପ୍ରମାଣିତ କରି ଯାଇଛନ୍ତି । ଡ.ପାଣିଗ୍ରାହୀ ସମ୍ବଲପୁରୀ ସାହିତ୍ୟ ପତ୍ରିକା ''ନିସାନ୍''ର ସମ୍ପାଦନା ମଧ୍ୟ କରିଥିଲେ । ବୃତ୍ତିରେ ସିନା ସେ ଜଣେ

ପଦସ୍ଥ ସରକାରୀ କର୍ମଚାରୀ ଥିଲେ, ପ୍ରବୃତ୍ତିରେ ଥିଲେ ଜଣେ ବୀଣାଧାରୀ ସୁର-ସାଧକ ଏବଂ ଲେଖନୀ-ଧାରୀ ସୁଲେଖକ । ତାଙ୍କ ସମଗ୍ର ଜୀବନଥିଲା ସାହିତ୍ୟ ଓ ସଙ୍ଗୀତ ସାଧନାର ଏକ ଅଧ୍ୟାତ୍ମଯଜ୍ଞ । ଡ.ନୀଳମାଧବ ପାଣିଗ୍ରାହୀଙ୍କ ସାଧନା ଓ ସିଦ୍ଧିକୁ ସମ୍ମାନ ଜଣାଇ ପ୍ରାଦେଶିକ ସ୍ତରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ସଙ୍ଗୀତନାଟକ ଏକାଡ଼େମୀ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଅନଗୁଳ ଜିଲ୍ଲା ସାହିତ୍ୟ-ସଂସଦ, ଓଡ଼ିଶା ସାଂସ୍କୃତିକ ସମାଜ ସମ୍ବଲପୁର ଏବଂ ଜାତୀୟସ୍ତରରେ କେନ୍ଦ୍ର-ସଙ୍ଗୀତ ନାଟକ ଏକାଡେମୀ ସମ୍ମାନିତ କରିଥିଲେ । ବରେଣ୍ୟ କବି ନୀଳମାଧବ ଆନ୍ତର୍ଜାତିକ ସ୍ତରରେ ଭାରତର ମହାମହିମ ରାଷ୍ଟ୍ରପତି ଓ ମାନ୍ୟବର ପ୍ରଧାନମନ୍ତ୍ରୀଙ୍କ ପୌରୋହିତ୍ୟରେ ଅନୁଷ୍ଠିତ "ବିଶ୍ୱକବି ରବୀନ୍ଦ୍ରନାଥ ସାର୍ଦ୍ଧ ଶତାବ୍ଦୀ ଜୟନ୍ତୀ ସ୍ମାରକୀ ସମ୍ମାନ"ରେ ସମ୍ମାନିତ ହୋଇଥିଲେ ।

ସମ୍ବଲପୁରୀ କବିତା ସୃଷ୍ଟି କରିବା ପୂର୍ବରୁ ନୀଳମାଧବ ଓଡ଼ିଆ ଭାଷାର ଜଣେ ଅତି ପରିଚିତ କବି ଓ ପ୍ରାବନ୍ଧିକ ରୂପେ ପ୍ରତିଷ୍ଠିତ ହୋଇ ସାରିଥିଲେ । ଏହି ମୁଖବନ୍ଧର କ୍ଷୁଦ୍ର କଳେବରରେ ନୀଳମାଧବଙ୍କ ଏକ କାଳଜୟୀ ଶୋକ-କବିତାକୁ ସ୍ଥାନିତ କରିବାର ଲୋଭ ସମ୍ବରଣ କରିପାରୁ ନାହିଁ ।

ଦୁନିଆଁରୁ ତୁମେ ନେଇଛ ବିଦାୟ ସଖି !
ବିଦାୟ ଆଗରୁ ଦେଇ ନାହିଁ ଶେଷ ଦେଖା
ଚାଲିଗଲ ଏକା ଏକା
ଏକା କରି ମୋତେ ଏପାରେ ଦେଇଛ ରଖି
ଜାଣିପାରୁନାହିଁ କି ଥିଲା ତୁମର ଅନ୍ତିମ ଅଭିଳାଷ
ରହିଗଲା ତାହା ଗୁହ୍ୟ ଅପ୍ରକାଶ
ତୁମ ସ୍ମୃତିଲାଗି କଅଣ କହିବି ରାଣୀ
ଭାବୁଅଛି ବସି ସହଜେ ପାରୁନି ଜାଣି ।

କବିଙ୍କ ପ୍ରାଣ-ପ୍ରଣୟିନୀ ସୁମେଧା ଦେବୀଙ୍କ ପ୍ରୟାଣତିଥିରେ ମର୍ମାହତ କବି ଶୋକ-ଜର୍ଜରିତ ଚିତ୍ତରେ ପ୍ରାଣର ଶ୍ରଦ୍ଧା ଛଳଛଳ ଭାଷାରେ ନୟନର ଅଶ୍ରୁ ମିଶାଇ ଲେଖିଛନ୍ତି ଏହି ଶୋକ-ଗୀତିକା । ଏହି କବିତାର ରସ କରୁଣ-ମଧୁର, ମଧୁର-କରୁଣ । ରାଧାମୋହନୀୟ ଛନ୍ଦରେ ଛନ୍ଦାୟିତ ଏହି ଶୋକ-କବିତା । ବିଶ୍ୱ-ସାହିତ୍ୟରେ ଟେନିସନ୍‌ଙ୍କ ବ୍ୟତୀତ ଅନ୍ୟ କୌଣସି କବି ଏତେ ସରଳ ଭାଷାରେ, ସଂଯତ ସ୍ୱରରେ, ସାବଲୀଳ ଶୈଳୀରେ ମଧୁର-କରୁଣ ରସରେ ଏପରି ଶୋକଗୀତିକା ଲେଖିଥିବାର ମୁଁ ଜାଣିନାହିଁ ।

ନୀଳମାଧବ ଜଣେ ପ୍ରାବନ୍ଧିକ ଭାବେ ଖ୍ୟାତି ଅର୍ଜନ କରିଥିଲେ । ''ଅଦ୍ୱିତୀୟ ଉମର ଖୈୟାମ୍'' ପ୍ରବନ୍ଧର କିୟଦଂଶ ଉଦ୍ଧାର କରି ତାଙ୍କ ଗଦ୍ୟ ରଚନାଶୈଳୀ ବିଷୟରେ ଧାରଣା ଦେଉଛି :

''ପାରସ୍ୟ ମରୁଦେଶର ମଧ୍ୟଯୁଗୀୟ ମହାତ୍ମା ଉମର ଖୈୟାମ୍ ତାଙ୍କ ''ରସସ୍ରାବୀ'' ରୁବାଇ (ଚତୁଷ୍ପଦୀ କବିତା) ମାନଙ୍କ ପାଇଁ ସାହିତ୍ୟ ସଂସାରରେ ସୁବିଖ୍ୟାତ । ସେଇ ରୁବାଇ ଗୁଡ଼ିକର ଆବେଦନ ସାର୍ବଜନୀନ ଓ ସନାତନ, ମାତ୍ର ପ୍ରେମ କବିତା ଭାବରେ ନୁହେଁ । ଏକ ନିର୍ମମ-ନିୟତି ନିୟନ୍ତ୍ରିତ ସୃଷ୍ଟିଯନ୍ତ୍ର ଭିତରକୁ ବିକ୍ଷିପ୍ତ ଓ ନିଃସହାୟ ଭାବରେ ନିଷ୍ପେଷିତ, ନିପୀଡ଼ିତ, ପରାହତ ମାନବର ବିଦ୍ରୋହୀ ଅନ୍ତର୍ଦାହ ସହିତ ଆନନ୍ଦ ସ୍ୱରୂପ ସୃଷ୍ଟିକର୍ତ୍ତାଙ୍କଠାରେ ଅବିଚଳିତ ଆସ୍ଥା–ଏଇ ଧରଣର ଦୋଦୁଲ୍ୟମାନ ଦ୍ୱୈତଭାବର ସ୍ୱାନୁଭୂତି-ରସାଣିତ ଅଭିବ୍ୟକ୍ତି ଉମର କବିତାର ନାନ୍ୟତ୍ରଲଭ୍ୟ ନିଜସ୍ୱ ।''

ଏହି ଲେଖାକୁ ଗଦ୍ୟ କହିଲେ ଚଳିବ, ପଦ୍ୟ କହିଲେ ଚଳିବ, ମନ୍ତ୍ର କହିଲେ ଚଳିବ, ଶ୍ଲୋକ କହିଲେ ବି ଚଳିବ । ସଂସ୍କୃତ ଭାଷାର ଏହା ବୋଧହୁଏ ସର୍ବାପେକ୍ଷା ଅଧିକ ନିକଟତମ ଭାଷା । ଭାଷା ଓ ଭାବର ବି ଚମତ୍କାର ମିଳନ, କି ମଧୁର ସମନ୍ୱୟ ।

ଏହି ଜୀବନୀରେ ଦୀପ୍ତିରଞ୍ଜନ ଓଡ଼ିଶାର ଛାନ୍ଦସିକ କବି ରାଧାମୋହନ ଗଡ଼ନାୟକ 'ଏବଂ' ତାଙ୍କ କବିବନ୍ଧୁ ପ୍ରଣୟ ଓ ପ୍ରକୃତିର କବି ମାୟାଧର ମାନସିଂହଙ୍କ ସହିତ ଡ. ନୀଳମାଧବ ପାଣିଗ୍ରାହୀଙ୍କ ସାରସ୍ୱତ ସମ୍ପର୍କ ବିଷୟ ଉଲ୍ଲେଖ କରିଛନ୍ତି । ସାଧକ-ତ୍ରୟୀ ମୋର ଗୁରୁଜନ । ଡ. ମାନସିଂହ ମୋର ପୂଜ୍ୟ ଗୁରୁ । ମୁଁ ତାଙ୍କର ପ୍ରିୟ ଛାତ୍ର । କବି ଗଡ଼ନାୟକ ମୋର ପିତୃବ୍ୟ-ପ୍ରତିମ ତତ୍ତ୍ୱାବଧାରକ । ମୁଁ ତାଙ୍କ କବିତାର ବିଦଗ୍ଧ ଓ ବିମୁଗ୍ଧ ପାଠକ । କବି ନୀଳମାଧବ ମୋର ପୂଜ୍ୟ ଅଗ୍ରଜ । ମୁଁ ତାଙ୍କର ସ୍ନେହର ଅନୁଜ । ତିନିଜଣଙ୍କ ସହିତ ମୋର ସମ୍ପର୍କ ପାରସ୍ପରିକ ଶ୍ରଦ୍ଧା-ଭକ୍ତିର ନିବିଡ଼ ସମ୍ପର୍କ । ରାଧାମୋହନ ଓ ନୀଳମାଧବଙ୍କ ବନ୍ଧୁତାକୁ ବନ୍ଧୁତା କହିଲେ ଦୁଇବନ୍ଧୁଙ୍କ ସ୍ମୃତି ପ୍ରତି ଅପମାନ ହୋଇଯିବ । ସେ ବନ୍ଧୁତାର ଗଭୀରତାକୁ ମାପିବା ପାଇଁ ମାପ କାଠି କାହିଁ ? ବର୍ଣ୍ଣିବାକୁ ଅଭିଧାନରେ ଭାଷା କାହିଁ ? ଭାରତୀୟ ଆଧ୍ୟାତ୍ମିକ ଭାଷାରେ ଏକମାତ୍ର ଶବ୍ଦ ଅଛି । ଭାବ-ଭରା ଶବ୍ଦ 'ତଦାତ୍ମ୍ୟ' । ୧୯୪୪ ଖ୍ରୀଷ୍ଟାବ୍ଦର ଏକ ଶ୍ରାବଣୀ ସନ୍ଧ୍ୟାରେ ଝିପି ଝିପି ବର୍ଷାରେ ମହ୍ଲାରର ମଧୁର ଝଙ୍କାରରେ ଝଙ୍କୃତ ଅନଗୁଳ ସହରରେ ଦୁହିଁଙ୍କ ଭିତରେ ପ୍ରଥମ

ସାକ୍ଷାତ୍ ଘଟିଥିଲା । ପ୍ରଥମ ସାକ୍ଷାତ୍‌ରେ ବନ୍ଧୁତା ଗଢ଼ି ଉଠିଥିଲା । କାଳର ଗତିରେ ସେହି ବନ୍ଧୁତା ଶିଥିଳ ହେବା ପରିବର୍ତ୍ତେ ନିବିଡ଼ରୁ ନିବିଡ଼ତର ହୋଇ ତଦାତ୍ମ୍ୟରେ ରୂପାନ୍ତରିତ ହୋଇଗଲା । ଦୁହେଁ ଦୁହିଁଙ୍କର ବନ୍ଧୁ, ଦୁହେଁ ଦୁହିଁଙ୍କର ଗୁରୁ, ଦୁହେଁ ଦୁହିଁଙ୍କର ଶିଷ୍ୟହୋଇ ରହିଗଲେ ଏବଂ ରହିଛନ୍ତି ।

ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତାକାଶର ଉଜ୍ଜ୍ୱଳ ଜ୍ୟୋତିଷ୍କ, ଓଡ଼ିଶାର ସ୍ୱନାମଧନ୍ୟ କବି ଓ ପ୍ରାବନ୍ଧିକ, ସମ୍ବଲପୁରୀ-କୋଶଲୀ ଭାଷାର ବ୍ୟାସ, ଡକ୍ଟର ନୀଳମାଧବ ପାଣିଗ୍ରାହୀ ଆଉ ସଦେହରେ ଆମ ଗହଣରେ ନାହାନ୍ତି । ମାତ୍ର ସେ ମରିନାହାନ୍ତି । ତାଙ୍କ କବିବନ୍ଧୁ ରାଧାମୋହନ ଗଡ଼ନାୟକଙ୍କ ଭାଷାରେ ''ମରି ନାହାନ୍ତି ସେ ନ ପାରନ୍ତି ମରି, ମରିଛି କି କାହିଁ ମରଣଜୟୀ । ମରିନାହାନ୍ତି ସେ ମରଣଜୟୀ ।'' ମୋର ପୂଜ୍ୟ ଅଗ୍ରଜ ପଣ୍ଡିତ ନୀଳମାଧବ ପାଣିଗ୍ରାହୀଙ୍କ ପବିତ୍ର ସ୍ମୃତିରେ ଶ୍ରଦ୍ଧା-ଭକ୍ତିର ଅଞ୍ଜଳିଭରା ସୁମନ ଅର୍ପଣ କରି ପ୍ରବନ୍ଧ ସମାପ୍ତ କରୁଛି ।

ପ୍ରବନ୍ଧର ଉପସଂହାରରେ ଏହି ଗ୍ରନ୍ଥର ରଚୟିତା ଦୀପ୍ତିରଞ୍ଜନ ଶେଠଙ୍କୁ ଶ୍ରଦ୍ଧାଛଳଛଳ ଭାଷାରେ ଅଭିନନ୍ଦନ ଜଣାଉଛି । ପ୍ରକାଶକ ଶ୍ରୀମାନ୍ ଶ୍ରୀବଲ୍ଲଭ ପାଣିଗ୍ରାହୀ ଏବଂ ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀଙ୍କୁ ସ୍ନେହ-ଶ୍ରଦ୍ଧା-ସିକ୍ତ କୃତଜ୍ଞତା ଜଣାଉଛି । ଏହି ''ଜୀବନୀ'' ସର୍ବଜନ ସମାଦୃତ ହେବ, ଗବେଷକମାନଙ୍କୁ ଗବେଷଣା ପାଇଁ ମୂଲ୍ୟବାନ ଉପାଦାନ ଯୋଗାଇବ ବୋଲି ମୋର ଆଶା ଓ ବିଶ୍ୱାସ ।

**ମୀନକେତନ ପୁରୋହିତ**
ସଭାପତି
ସ୍ୱୟଂଶାସିତ ଅନଗୁଳ ମହାବିଦ୍ୟାଳୟ
ପରିଚାଳନା ସମିତି ।

ଅନଗୁଳ
ତା ୫-୧-୨୦୧୪

# ସୂଚୀପତ୍ର



—



[ କବି ନୀଳମାଧବ ଓ କବିପତ୍ନୀ ସୁମେଧା ଦେବୀ ]



[ କବି ରାଧାମୋହନ ଗଡ଼ନାୟକଙ୍କ ସହିତ କବି ନୀଳମାଧବ ପାଣିଗ୍ରାହୀ ]



[ ପ୍ରଖ୍ୟାତନାମା ପ୍ରାବନ୍ଧିକ ଓ ସାହିତ୍ୟିକ ଡକ୍ଟର୍ ନୀଳମାଧବ ପାଣିଗ୍ରାହୀ (ଡି.ଲିଟ୍)ଙ୍କ ସହିତ ଏହି ବହିର ଲେଖକ ଶ୍ରୀ ଦୀପ୍ତିରଞ୍ଜନ ଶେଠ । ]

## ଉତ୍ସର୍ଗପତ୍ର

ଓଡ଼ିଶାର ବିଶିଷ୍ଟ ଗବେଷକ ଓ ସମାଲୋଚକ **ପ୍ରଫେସର ଡ. ସୁଦର୍ଶନ ଆଚାର୍ଯ୍ୟଙ୍କ** ନାମରେ ଏହି ''କୋଶଳବ୍ୟାସ : ନୀଳମାଧବ ପାଣିଗ୍ରାହୀ'' ଶୀର୍ଷକ ବହି ଖଣ୍ଡିକ ଉତ୍ସର୍ଗ କରାଗଲା ।

ପୌଷ ପୂର୍ଣ୍ଣିମା, ୧୪୨୧ ସାଲ,
ଗୁରୁବାର ।

ବିନୀତ
**ଶ୍ରୀ ଦୀପ୍ତିରଂଜନ ଶେଠ**
(ବାବୁନନ୍ଦ)

# ପ୍ରଥମ ଅଧ୍ୟାୟ

## ସଂକ୍ଷିପ୍ତ ଜୀବନ ପରିଚୟ

ଗୁଲୁଣ୍ଡା–ସମ୍ବଲପୁର ଜିଲ୍ଲାର ମାନଚିତ୍ରରେ ଏକ ଅଜ୍ଞାତ, ଅଖ୍ୟାତ କ୍ଷୁଦ୍ରପଲ୍ଲୀ । ଗୁଲୁଣ୍ଡା ହେଉଛି – ''ମାଲ୍‌ତୀ'' ଜୋର୍ ନିକଟରେ ଅବସ୍ଥିତ ଏକ କ୍ଷୁଦ୍ରଗ୍ରାମ । କବି ନୀଳମାଧବ ତାଙ୍କର ''ପାଣିଗ୍ରାହୀ–ପଦ୍ୟାବଳୀ''ରେ ଥିବା ''ମାଲ୍‌ତୀ ନୁହେ ସୁରୁସାରି ଜୋର୍'' ଶୀର୍ଷକ କବିତାରେ ଲେଖିଛନ୍ତି :

''ମାଲ୍‌ତୀ ମାଁ ଗୋ ! ମାଲ୍‌ତୀ ମାଆଁ !
ତୋର୍ କୁଲେଁତ ଜନମ୍ ହେଲା ମୋର୍
କେନ୍‌ତା କରି ମାନ୍‌ମି ମୁଇଁ
ମାମ୍‌ଲି ଗୁଟେ ସୁରୁସାରି ଜୋର୍ ?
ହାମର୍ ଦେଶର୍ ନକ୍‌ସା–ଦିହେଁ
ନାଇଁଥିଲେଁ ଭି ମାଆଁ ! ତୋର୍ ନାଁ ପତା
ବାୟ୍‌ବି ଲୁକେ ନାଇଁଭି ଜାନୁନ୍
ମୋର୍ ଲାଗି ଆୟ୍ କେନ୍ ବଡ଼େଟେ କଥା ?''
(ପାଣିଗ୍ରାହୀ–ପଦ୍ୟାବଲୀ–୨୦୦୫, ପୃ.୧୦)

ଏଇ କ୍ଷୁଦ୍ର ପଲ୍ଲୀରେ ନୀଳମାଧବ ପାଣିଗ୍ରାହୀଙ୍କ ଆବିର୍ଭାବ ହୋଇଥିଲା ତା୧୪–୧୧–୧୯୧୯ର ଶୁଭବାସରରେ । ସେହି ଦିନଟି ଥିଲା ପୃଥିବୀ ପୃଷ୍ଠରେ ସତେ ଯେପରି ଏକ ଅମୃତମୟ ମୁହୂର୍ତ୍ତ, ଏକ ଦିବ୍ୟ ମୁହୂର୍ତ୍ତ । ବିଶ୍ୱନିୟନ୍ତାଙ୍କ ଆଦେଶରେ ସୁଧାସ୍ୱାଧୀ ସ୍ୱର୍ଗଚ୍ୟୁତ ଅମୃତ ସାଗ୍‌ର ବିନ୍ଦୁ ପରି ସେ ଖସିଆସି ଗୁଲୁଣ୍ଡାର ଏହି ଅଖ୍ୟାତ, ଅପରିଚିତ ପାଣିଗ୍ରାହୀ ବଂଶକୁ କରିଥିଲେ ଯଶସ୍ୱୀ ଓ କୀର୍ତ୍ତିମାନ୍ । ତାଙ୍କର ଶୁଭ ଆବିର୍ଭାବ ଫଳରେ ପରିବାର ମଧ୍ୟରେ ସେଦିନ ଆନନ୍ଦର ବନ୍ୟା ମାଡ଼ିଯାଇଥିଲା । ସେ ଆନନ୍ଦ କହିଲେ ନସରେ । ସେ ଆନନ୍ଦକୁ ଭାଷାରେ ପ୍ରକାଶ କରିହୁଏନା । ସେ ଆନନ୍ଦ ହେଉଛି ସ୍ୱର୍ଗୀୟ ଆନନ୍ଦ ବା ଦିବ୍ୟାନନ୍ଦ । ଅନ୍ୟ ଅର୍ଥରେ ତାହା କାବ୍ୟାନନ୍ଦଠାରୁ କିଛି କମ୍ ନୁହେଁ । ଦିବ୍ୟପୁତ୍ରଙ୍କ ଜନ୍ମ–ଜାତକ ଦେଖି ପିତା ଆନନ୍ଦରେ ବିଭୋର ହୋଇଗଲେ । ଭବିଷ୍ୟତ୍‌ରେ ସେହି ନବଜାତ ଶିଶୁ ଯେ ସମଗ୍ର ପାଣିଗ୍ରାହୀ ବଂଶର ମୁଖ ଉଜ୍ଜ୍ୱଳ କରିବ, ଏଥିରେ

ତାଙ୍କର ସନ୍ଦେହ ନଥିଲା । ପିତାଙ୍କର ସେହି ଦିବ୍ୟଦୃଷ୍ଟି ପରବର୍ତ୍ତୀ କାଳରେ ସତ୍ୟରେ ପରିଣତ ହୋଇଗଲା । ତାଙ୍କ ପିତାଙ୍କ ନାମ ପଣ୍ଡିତ ଦୈତ୍ୟାରି ପାଣିଗ୍ରାହୀ ଓ ମାଆଙ୍କ ନାମ ଥିଲା ରାଧାଦେବୀ । ଦୈତ୍ୟାରି ବାବୁଙ୍କ ଚାରିଜଣ ସନ୍ତାନ ଥିଲେ । ସେମାନେ ହେଲେ – ନୀଳମାଧବ, ଲୋକଜନନୀ, ଯୋଜନଗନ୍ଧା ଓ ସତ୍ୟ ନାରାୟଣ । ଅର୍ଥାତ୍ ନୀଳମାଧବଙ୍କ ଦୁଇଜଣ ସାନ ଭଉଣୀ ଓ ଜଣେ ସାନ ଭାଇ । ତାଙ୍କର ପିତାମାତା ଏହି ଚାରିଜଣ ପୁତ୍ରକନ୍ୟାଙ୍କ ଉପଯୁକ୍ତ ଯତ୍ନ ଓ ଦାୟିତ୍ୱ ନେଇଥିଲେ । ନୀଳମାଧବଙ୍କ ବାପା ଥିଲେ ସେ ସମୟର ଜଣେ ସଂସ୍କୃତ ବିଦ୍ୱାନ୍, ସାହିତ୍ୟାଚାର୍ଯ୍ୟ । ପଣ୍ଡିତ ଦୈତ୍ୟାରି ପାଣିଗ୍ରାହୀ "କାବ୍ୟକଣ୍ଠ" ନାମରେ ସମ୍ବୋଧିତ ହେଉଥିଲେ । ସଂସ୍କୃତ ସାହିତ୍ୟ ଭିତରେ ତାଙ୍କର ଗଭୀର ପ୍ରବେଶ ଥିଲା । ତାଙ୍କର ମାଆ ରାଧାଦେବୀ ମଧ୍ୟ ସୁଶିକ୍ଷିତା ତଥା ସଂସ୍କୃତିସମ୍ପନ୍ନା ଜଣେ ଆଦର୍ଶ ଗୃହିଣୀ ଥିଲେ । ତାଙ୍କର ମଧ୍ୟ ସାଧାରଣ ଭାବରେ ସାହିତ୍ୟ ଓ ସଂସ୍କୃତ ଜ୍ଞାନ ଥିଲା । ନୀଳମାଧବ ଶୈଶବରୁ ପିତା-ମାତାଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇଥିଲେ । ଫଳରେ ତାଙ୍କ ଅନ୍ତର୍ନିହିତ ପ୍ରତିଭାର ବିକାଶ ଘଟିଥିଲା ।

## ଶିକ୍ଷାଲାଭ :

ସ୍ୱଭାବ କବି ଗଙ୍ଗାଧର ମେହେରଙ୍କର ଯେଉଁବର୍ଷ ମହାପ୍ରୟାଣ ହୁଏ, ସେହିବର୍ଷ ଅର୍ଥାତ୍ ୧୯୨୪ ମସିହାରେ ଶିଶୁ ନୀଳମାଧବଙ୍କ ନାମ ଲେଖାହୁଏ ସର୍ଗିପାଲି ନିମ୍ନ ପ୍ରାଥମିକ ବିଦ୍ୟାଳୟରେ । ଗୁଲୁଣ୍ଡାରୁ ସର୍ଗିପାଲି ପ୍ରାୟ ତିନି କିଲୋମିଟର ବାଟ । ମାତ୍ର ନୀଳମାଧବ ପାଞ୍ଚବର୍ଷର ଶିଶୁ ଥିବାରୁ ତାଙ୍କର ବାପା ମାଆ ତାଙ୍କୁ ଏକୁଟିଆ ସ୍କୁଲ ଯିବାକୁ ଛାଡୁ ନଥିଲେ । କାବ୍ୟକଣ୍ଠ ଦୈତ୍ୟାରି ପାଣିଗ୍ରାହୀ ନିଜ ପୁଅର ଭବିଷ୍ୟତ ଚିନ୍ତାକରି 'ନକୁଳଡ଼ଁଠା' ନାମକ ଜଣେ ବ୍ୟକ୍ତିଙ୍କୁ ନିୟୋଜିତ କରିଥିଲେ । ନକୁଳଡ଼ଁଠା ସେତେବେଳେ ଦୈତ୍ୟାରିବାବୁଙ୍କ ଘରେ ହଳିଆ କାମ କରୁଥିଲେ । ସେ ସମ୍ପୂର୍ଣ୍ଣ ନିରକ୍ଷର ଥିଲେ ବି' ପାଠର ମହତ୍ତ୍ୱ କେତେ ତାହା ଉତ୍ତମରୂପେ ବୁଝିପାରିଥିଲେ । ତେଣୁ ତିନିବର୍ଷକାଳ ଗୁଲୁଣ୍ଡାରୁ ଶିଶୁ ନୀଳମାଧବଙ୍କୁ କାନ୍ଧରେ ବସାଇ ସର୍ଗିପାଲି ନିମ୍ନ ପ୍ରାଥମିକ ସ୍କୁଲକୁ ପାଠ ପଢ଼ାଇବା ପାଇଁ ନେଇ ଯାଉଥିଲେ । ରାସ୍ତାରେ ଗଲାବେଳେ ନକୁଳଡ଼ଁଠା ବାଳକ ନୀଳମାଧବଙ୍କ ମନୋରଞ୍ଜନ କରିବା ସକାଶେ ଛୋଟ ଛୋଟ ରୋମାଞ୍ଚକର କାହାଣୀ ସବୁ ଶୁଣାଉଥିଲେ । ମଝିରେ ମଝିରେ ଗୀତ ମଧ୍ୟ ଗାଉଥିଲେ । ରାସ୍ତାରେ ବିଭିନ୍ନ

ପ୍ରକାରର ପଶୁପକ୍ଷୀ, ଜୀବଜନ୍ତୁ, କୀଟପତଙ୍ଗ ଦେଖି ଏବଂ ବିଭିନ୍ନ ଫୁଲର ସୁଗନ୍ଧ ଆଘ୍ରାଣ କରି ଉଭୟେ ତନ୍ମୟ ଓ ମୁଗ୍ଧ ବିଭୋର ହୋଇ ଯାଉଥିଲେ । ବାଳକ ନୀଳମାଧବ କେବେ ବିଦ୍ୟାଳୟରେ ଅନୁପସ୍ଥିତ ହେଉ ନଥିଲେ । ପାଠ ପଢ଼ିବାରେ ଯେପରି ଆଗ୍ରହ ଥିଲା, କାହାଣୀ ଶୁଣିବାରେ, ପ୍ରକୃତିର ଦୃଶ୍ୟ ଉପଭୋଗ କରିବାରେ, ସେତିକି ଆଗ୍ରହ ଥିଲା । ନକୁଳଉଁଠା ମଧ୍ୟ କାହାଣୀ କହି, ଗୀତ ଗାଇ ଏକ ପ୍ରତିଭାବାନ୍ ଶିଶୁର ପ୍ରତିଭା ବିକାଶରେ କମ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିନଥିଲେ । ଜୀବନର ସାୟଂକାଳରେ କବି ନକୁଳଉଁଠାଙ୍କ ସ୍ମୃତିଚାରଣ କରି ଭାବ-ବିହ୍ୱଳ ହେଉଥିଲେ । ଚକ୍ଷୁ ଯୁଗଳରୁ କୃତଜ୍ଞତାର ଅଶ୍ରୁ ଝରିଯାଉଥିଲା ।

'ସର୍ଗିପାଲି' ନିମ୍ନ ପ୍ରାଥମିକ ବିଦ୍ୟାଳୟକୁ ଯିବା ପୂର୍ବରୁ ତାଙ୍କ ବାପା ଘରେ ତାଙ୍କୁ ଓଡ଼ିଆ ବର୍ଣ୍ଣମାଳା, ଫଳା, ଅକ୍ଷର ଶିକ୍ଷା ସହିତ ଅଙ୍କ ଓ ପଣକିଆ କିଛି ଶିଖାଇ ଦେଇଥିଲେ । ଫଳରେ ପାଠପ୍ରତି ଶିଶୁ ନୀଳମାଧବଙ୍କ ଆଗ୍ରହ ଓ ଉତ୍ସାହ ବଢ଼ି ଯାଇଥିଲା । 'ସର୍ଗିପାଲି'ରେ ସେ ପ୍ରଥମରୁ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ସେତେବେଳେ 'ଧମା' ଗ୍ରାମରେ ଗୋଟିଏ ଭର୍ଣ୍ଣାକୁଲାର ସ୍କୁଲ ଥିଲା । ତାଙ୍କ ବାପାଙ୍କ ମାମୁଁଘର – 'ବାଲ୍‌ପୁର' – 'ଧମା' ନିକଟବର୍ତ୍ତୀ ଏକ କ୍ଷୁଦ୍ର ଗ୍ରାମ । ସେହି ଗାଁରେ କେତେ ମାସ ରହି ଧମା ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଲେ । ମାତ୍ର ଚତୁର୍ଥ ଶ୍ରେଣୀ ଅଧାରୁ ପାଠଛାଡ଼ି କେତେ ମାସ ଘରେ ବସି ରହିଲେ । ସେତେବେଳେ ସମ୍ବଲପୁର ପଟ୍ଟନାୟକ ପଡ଼ାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା । ସେଠାରେ ସେ ୧୯୨୮ରୁ ୧୯୩୨ ମସିହା ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ ।

## ଜିଲ୍ଲାସ୍କୁଲର ଛାତ୍ର ଜୀବନ :

୧୯୩୨ ମସିହାରେ ନୀଳମାଧବଙ୍କ ନାମ ଲେଖା ହେଲା ସମ୍ବଲପୁର ଜିଲ୍ଲାସ୍କୁଲରେ । ସେତେବେଳେ ସମ୍ବଲପୁର ଜିଲ୍ଲାସ୍କୁଲ କହିଲେ ସାରା ଓଡ଼ିଶାର ଲୋକେ ଜାଣୁଥିଲେ । ଏହି ବିଦ୍ୟାଳୟରେ ଅନେକ ଗୁଣୀ, ଜ୍ଞାନୀ, ମହାମନା ଓ ପ୍ରତିଭାସମ୍ପନ୍ନ ବ୍ୟକ୍ତି ପ୍ରଧାନଶିକ୍ଷକର ଭୂମିକା ନିର୍ବାହ କରିଥିଲେ । ଏକଦା ପଲ୍ଲୀକବି ନନ୍ଦକିଶୋର ବଳ (୧୯୧୧-୧୯୧୨) ଏଠାରେ ପ୍ରଧାନ ଶିକ୍ଷକ ରୂପେ ଅବସ୍ଥାପିତ ହୋଇଥିଲେ । କବି ନନ୍ଦକିଶୋର ବଳ ସମ୍ବଲପୁର ଜିଲ୍ଲାସ୍କୁଲର ପ୍ରଧାନଶିକ୍ଷକ ରୂପେ ସମ୍ବଲପୁରରେ ଗୋଟିଏ ଉତ୍ତମ ସାହିତ୍ୟିକ ବାତାବରଣ ସୃଷ୍ଟିକରି ପାରିଥିଲେ । କବି ନନ୍ଦକିଶୋର ବଳ ସୁଚାରୁରୂପେ ସ୍କୁଲର ପରିଚାଳନା

କରୁଥିଲେ । ନନ୍ଦକିଶୋର ବଳଙ୍କ ମଧୁମୟ କାର୍ଯ୍ୟାବଳୀ ସମ୍ପର୍କରେ ଉଚ୍ଚ ପ୍ରଶଂସା କରି ବାମଣ୍ଡାରୁ ପ୍ରକାଶିତ ହେଉଥିବା ସାପ୍ତାହିକ ସମ୍ବାଦପତ୍ର ''ସମ୍ବଲପୁର ହିତୈଷିଣୀ''ର ସମ୍ପାଦକ ଶ୍ରୀ ଦୀନବନ୍ଧୁ ଗଡ଼ନାୟକ 'ସମ୍ବଲପୁର ସମ୍ବାଦ' ଶୀର୍ଷକରେ ଲେଖିଥିଲେ :

> ''..... ଏଠାକାର ହାଇସ୍କୁଲରେ ନବନିଯୁକ୍ତ ହେ:ମା: ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ବଳଙ୍କର ମଧୁମୟ କାର୍ଯ୍ୟାବଳୀରେ ସମ୍ବଲପୁରବାସୀ ନିରତିଶୟ ଆନନ୍ଦିତ ଅଛନ୍ତି । ସ୍କୁଲର ଶାନ୍ତିରକ୍ଷା ମଧ ଉତ୍ତମ ହୋଇଅଛି । ଶିକ୍ଷକଙ୍କ ମଧରେ ଯେ ମନୋମାଳିନ୍ୟ ଥିଲା, ତାହା ଏକାବେଳକେ ବିଦୂରିତ ହୋଇଅଛି, ବଳ ମହାଶୟ ଏଠାରେ ସ୍ଥାୟୀ ଭାବରେ ଚିରଦିନ ଅବସ୍ଥାନ କରନ୍ତୁ ଏହା ହିଁ କାମନା କରୁଅଛୁଁ ।''

(ସମ୍ବଲପୁର ହିତୈଷିଣୀ : ୨୨/୪୫ : ତା ୨୬-୮-୧୯୧୧, ଶନିବାର)

ଏଠାରେ ବାଳକ ନୀଳମାଧବଙ୍କ କବି ପ୍ରତିଭାର ଆଦ୍ୟପର୍ବର ଉନ୍ମେଷ ଘଟିଥିଲା । ତାଙ୍କ ସ୍କୁଲ ପାଠ୍ୟକ୍ରମ ଥିଲା ସାହିତ୍ୟ, ସଂସ୍କୃତ, ପାଟୀଗଣିତ, ଭୂଗୋଳ, ଇତିହାସ, ବିଜ୍ଞାନ ଓ ଇଂରାଜୀ । ସାହିତ୍ୟରେ ପାଠ୍ୟ ଥିଲା ମୁଖ୍ୟତଃ ପ୍ରାଚୀନ ଓଡ଼ିଆ କାବ୍ୟ-କବିତା । ଯଥା:- ମଥୁରାମଙ୍ଗଳ, ବୈଦେହୀଶ ବିଳାସ, ରସକଲ୍ଲୋଳ, ବିଦଗ୍ଧ ଚିନ୍ତାମଣି ଇତ୍ୟାଦି । ସେ ଭଲ ପାଠ ପଢୁଥିଲେ । ତେଣୁ ସେ ଶିକ୍ଷକମାନଙ୍କର ଅତ୍ୟନ୍ତ ପ୍ରିୟ ଛାତ୍ର ରୂପେ ପରିଗଣିତ ହେଉଥିଲେ । ନୀଳମାଧବ ସହପାଠୀମାନଙ୍କ ଶ୍ରଦ୍ଧାଭାଜନ ଥିଲେ । ଜଣେ କଣ୍ଠଶିଳ୍ପୀ ଭାବେ ସେ ସମସ୍ତଙ୍କର ପ୍ରିୟପାତ୍ର ଥିଲେ । ଶ୍ରେଣୀକକ୍ଷରେ ସେ କାହା ସହିତ କଳିଗୋଳ କିମ୍ବା ବିବାଦ କରୁନଥିଲେ । ନୀରବ ଓ ବିନୀତ ଭାବରେ ବହିଖୋଲି ବିଶେଷକରି ପଢ଼ାପଢ଼ିରେ ମନ ଦେଉଥିଲେ । ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକଙ୍କ ତାଲିକାରୁ ଜଣାପଡ଼େ ଯେ, ନୀଳମାଧବ ଛାତ୍ରଥିବାବେଳେ ଚାରିଜଣ ଶିକ୍ଷକ ବିଭିନ୍ନ ସମୟରେ ପ୍ରଧାନ ଶିକ୍ଷକଙ୍କ ଭୂମିକା ଗ୍ରହଣ କରି ସୁଚାରୁରୂପେ ସ୍କୁଲକାର୍ଯ୍ୟ ସମ୍ପାଦନ କରିଥିଲେ । ସେମାନେ ହେଲେ :

(୧) ଶ୍ରୀ ମହେଶ ଚନ୍ଦ୍ର ପ୍ରଧାନ – (ପ୍ରଧାନ ଶିକ୍ଷକ) – ୧୯୩୨ ରୁ ୧୯୩୫
(୨) ଶ୍ରୀ ଏ.କେ. ବେନର୍ଜି – (ପ୍ରଧାନ ଶିକ୍ଷକ) – ୧୯୩୫ କିଛିମାସ
(୩) ଶ୍ରୀ ଜଗନ୍ନାଥ ତ୍ରିପାଠୀ – (ପ୍ରଧାନ ଶିକ୍ଷକ) – ୧୯୩୫ କିଛିମାସ
(୪) ଅଧ୍ୟାପକ ରତ୍ନାକର ପତି – (ପ୍ରଧାନ ଶିକ୍ଷକ) – ୧୯୩୫ କିଛିମାସ

ପ୍ରଧାନ ଶିକ୍ଷକ ମାନଙ୍କ ବ୍ୟତୀତ ଅନ୍ୟ ସହକାରୀ ଶିକ୍ଷକମାନେ ହେଲେ :
(୧) ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର (କାବ୍ୟତୀର୍ଥ) – ସାହିତ୍ୟ ଓ ସଂସ୍କୃତ
(୨) ଶ୍ରୀ ଅକ୍ଷୟ କୁମାର ବନ୍ଧୋପାଧ୍ୟାୟ – (ଇଂରାଜୀ)
(୩) ଶ୍ରୀ ମହେଶଚନ୍ଦ୍ର ମିଶ୍ର – B.A. B.ed. – (ଇଂରାଜୀ)
(୪) ଶ୍ରୀ ହୃଷୀକେଶ ନାୟକ – M.A. History – .(ଇତିହାସ)

ପ୍ରଧାନ ଶିକ୍ଷକ ଶ୍ରୀ ଜଗନ୍ନାଥ ତ୍ରିପାଠୀ ସେତେବେଳେ ଜିଲ୍ଲାସ୍କୁଲର ଜଣେ ସଚ୍ଚୋଟ ଓ କର୍ତ୍ତବ୍ୟପରାୟଣ ଶିକ୍ଷକ ଥିଲେ । ସ୍କୁଲରେ ସହକର୍ମୀମାନଙ୍କ ସହ, ଛାତ୍ରମାନଙ୍କ ଭଲମନ୍ଦ ବିଚାରକରି ବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି ସକାଶେ ମନପ୍ରାଣ ଢ଼ାଳି କର୍ମ କରୁଥିଲେ । ପିଲାମାନଙ୍କୁ ବିଦ୍ୟାନୁରାଗୀ କରିବା ପାଇଁ ପ୍ରେରଣା ଓ ପ୍ରୋତ୍ସାହନ ଦେଉଥିଲେ । ପିଲାମାନଙ୍କୁ ଦେଶସେବା, ସମାଜ ସେବାରେ ଉଦ୍‌ବୁଦ୍ଧ କରିବା, ମାତୃଭୂମି–ମାତୃଭାଷା ପ୍ରତି ମମତା ଜାଗ୍ରତ କରାଇବା ପ୍ରଭୃତି ବହୁବିଧ ସଂରଚନାତ୍ମକ ତଥା ମୌଳିକ କାର୍ଯ୍ୟ କରିବାକୁ ପରାମର୍ଶ ଦେଉଥିଲେ । ସାହିତ୍ୟ ଶିକ୍ଷକ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର (କାବ୍ୟତୀର୍ଥ) ଜଣେ ବହୁପାଠୀ ବିଦ୍ୱାନ୍ ଥିଲେ । ପ୍ରାଚୀନ ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ନୀଳମାଧବ, ପଣ୍ଡିତ ମିଶ୍ରଙ୍କର ପ୍ରିୟ ଛାତ୍ର ଥିଲେ ଏବଂ ତାଙ୍କୁ ପିତୃତୁଲ୍ୟ ଭକ୍ତି ମଧ୍ୟ କରୁଥିଲେ । ଫଳରେ ଗୁରୁ–ଶିଷ୍ୟଙ୍କ ମଧ୍ୟରେ ପାରସ୍ପରିକ ଶ୍ରଦ୍ଧା–ଭକ୍ତିର ଏକ ନିବିଡ଼ ସମ୍ପର୍କ ଗଢ଼ି ଉଠିଥିଲା ।

ନୀଳମାଧବ ଜିଲ୍ଲାସ୍କୁଲ୍‌ରେ ଅଧ୍ୟୟନ କରୁଥିବା ସମୟରେ ଉତ୍କଳମଣି ସ୍ୱର୍ଗୀୟ ଗୋପବନ୍ଧୁ ଦାଶଙ୍କ ଜ୍ୟେଷ୍ଠ ଜାମାତା ପ୍ରଫେସର୍ ରତ୍ନାକର ପତି ରାଞ୍ଚିରେ ଅଧ୍ୟାପନା କରୁଥିଲେ । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇବା ପରେ ରାଞ୍ଚିରୁ ଆସି ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ରୂପେ ଦାୟିତ୍ୱ ବହନ କଲେ । ପ୍ରଫେସର ପତିଙ୍କ ଯୋଗଦାନ ଫଳରେ ସମ୍ବଲପୁର ଜିଲ୍ଲାସ୍କୁଲ ହୋଇ–ଉଠିଲା ଏକ ଆଦର୍ଶ ସ୍ଥାନୀୟ ବିଦ୍ୟାଳୟ । ନୀଳମାଧବ ସାହିତ୍ୟ ଓ ଇଂରାଜୀ ଉଭୟ ବିଷୟରେ ଭଲ ନମ୍ବର ରଖୁଥିଲେ । ତାଙ୍କର ହାତଲେଖା ଅକ୍ଷରଗୁଡ଼ିକ ଠିକ୍ ମୁଦ୍ରିତ ଅକ୍ଷର ପରି ଗୋଲ୍ ଗୋଲ୍ ଦେଖା ଯାଉଥିଲା । ହସ୍ତଲିପି ଏବଂ ସାହିତ୍ୟ ପ୍ରତି ନୀଳମାଧବଙ୍କ ଗଭୀର ଅନୁରାଗ ସମ୍ପର୍କରେ ଅବଗତ ହୋଇ ପ୍ରଫେସର ପତି ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତର ଆଭାସ ପାଇଥିଲେ । ତା' ସଙ୍ଗେ ସଙ୍ଗେ ପ୍ରେରଣା ଓ ପ୍ରୋତ୍ସାହନ ଦେଇଥିଲେ । ସେ କାଳର କବି ଓ କୋବିଦ ମାନଙ୍କ ସ୍ନେହାଶୀର୍ବାଦ ଲାଭକରି ସାହିତ୍ୟ ପ୍ରତି ନୀଳମାଧବଙ୍କ ଅନୁରାଗ ବଢ଼ିବାରେ

ଲାଗିଲା । ନୀଳମାଧବ ଥିଲେ ସଦା ଅଧ୍ୟୟନଶୀଳ ଛାତ୍ର । ସ୍କୁଲ ପାଠ୍ୟ ବ୍ୟତୀତ ସେ ଛାନ୍ଦ ଗ୍ରନ୍ଥ, ଅଳଙ୍କାର ଗ୍ରନ୍ଥ, ସାହିତ୍ୟ, ବ୍ୟାକରଣ, ଶବ୍ଦକୋଷ ତଥା କାବ୍ୟ କବିତାଦି ଗଭୀର ମନୋଯୋଗ ସହକାରେ ପାଠ କରୁଥିଲେ । ୧୯୩୬ ମସିହାରେ ନୀଳମାଧବ ସମ୍ବଲପୁର ଜିଲ୍ଲାସ୍କୁଲରୁ ମେଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କ ସହିତ ଅନ୍ୟ ଯେଉଁ ଛାତ୍ରମାନେ ପାସ୍ କରିଥିଲେ, ସେମାନେ ହେଲେ :

1936

1. Debarchan Bhoi.
2. Prithwish chandra Brahma.
3. Hariprasad Mishra.
4. Panchanan Mishra.
5. Nandakishore Nanda.
6. Balabhadra Panda.
7. Nilamadhab Panigrahi.
8. Santisekhar Patnaik.
9. Murari Prasad Rath.
10. Prasanna Kumar Tripathy.
11. Abdus Samad.
12. Ambika Prasad Behera.
13. Kalakanhu Dalai.
14. Lakshminarayan Das.
15. Arabinda Chandra Deb.
16. Narayan Majhi.
17. Narayan Misra.
18. Jagannath Misra.
19. Sripati Misra.
20. Gouri Sankar Naik.
21. Raghunandan Panda.
22. Lokeswar Pradhan.
23. Gopinath Misra.
24. Nilambar Pujari.
25. Narahari Misra.
26. Sudarsan Das.
27. Aditya Prasad Bhoidar.

(ଉଦ୍ଧୃତ : Chandrasekhar Zila School Centenary Souvenir-1965)

## ରେଭେନ୍‌ସା କଲେଜର ଅଧ୍ୟାୟୀ–ଜୀବନ :

୧୯୩୬ ମସିହାରେ ନୀଳମାଧବ ଜିଲ୍ଲାସ୍କୁଲରୁ ମେଟ୍ରିକ୍ ପରୀକ୍ଷାରେ ପାସ୍ କରିଥିଲେ । ସେତେବେଳେ ସମ୍ବଲପୁରରେ କଲେଜ ନଥିଲା । ତେଣୁ ତାଙ୍କ ବାପା ଉଚ୍ଚଶିକ୍ଷା ସକାଶେ ଛାତ୍ର ନୀଳମାଧବଙ୍କୁ କଟକ ରେଭେନ୍‌ସା କଲେଜକୁ ପଠାଇଥିଲେ । ସେହି ସମୟରେ ଗୋଟିଏ କଥା ଥିଲା – "Anybody in Ravenshaw is Somebody in Odisha" ଅର୍ଥାତ୍ ରେଭେନ୍‌ସାର ଯେକୌଣସି ଛାତ୍ର ଓଡ଼ିଶାର ଜଣେ ସ୍ୱୀକୃତ ବ୍ୟକ୍ତିତ୍ୱ । ୧୯୩୬ ମସିହାରେ କଟକ ରେଭେନ୍‌ସା କଲେଜରେ ଆଇ.ଏ. ଶ୍ରେଣୀରେ ତାଙ୍କର କଲେଜ ଶିକ୍ଷା ଆରମ୍ଭ ହୋଇଥିଲା । ସୌଭାଗ୍ୟବଶତଃ, ସମ୍ବଲପୁର ଜିଲ୍ଲାସ୍କୁଲରେ ହେଡ୍‌ମାଷ୍ଟର ଥିବା ରତ୍ନାକର ପତି ସେହି ରେଭେନ୍‌ସା କଲେଜକୁ ଦର୍ଶନଶାସ୍ତ୍ରର ଅଧ୍ୟାପକ ଭାବରେ ନିଯୁକ୍ତି ପାଇ ଯାଇଥିଲେ । ସେହିଠାରେ ପୁଣି ଥରେ ଉଭୟ ଗୁରୁଶିଷ୍ୟ ସମ୍ପର୍କ ଅଧିକ ମଧୁର, ଅତୁଟ ଓ ଅବିଚ୍ଛେଦ୍ୟ ତଥା ଆହୁରି ଘନିଷ୍ଠ ହୋଇଥିଲା । ନୀଳମାଧବ ରେଭେନ୍‌ସା କଲେଜରେ ପଢିବାବେଳେ ତାଙ୍କ ସାହିତ୍ୟିକ ପ୍ରତିଭା ପୁଷ୍ପିତ, ଫଳାନ୍ୱିତ ଓ ଚନ୍ଦନାକ୍ତ ହୋଇଥିଲା ।

ନୀଳମାଧବ ରେଭେନ୍‌ସା କଲେଜର ପୂର୍ବ ଛାତ୍ରାବାସରେ ରହୁଥିଲେ । ସେତେବେଳକୁ ପୂର୍ବ ଛାତ୍ରାବାସର ମୁଖପତ୍ର "ଜାଗରଣ" ପ୍ରକାଶିତ ହୋଇ ସାରିଥାଏ । ଏହାର ପ୍ରଥମ ସମ୍ପାଦକ ଥିଲେ ସବୁଜକବି କାଳିନ୍ଦୀଚରଣ ପାଣିଗ୍ରାହୀ । ଠିକ୍ ସେହିପରି ପଶ୍ଚିମ ଛାତ୍ରାବାସର ମୁଖପତ୍ର "ଊର୍ମି" କବି ମାୟାଧର ମାନସିଂହଙ୍କ ସମ୍ପାଦନାରେ ପ୍ରକାଶ ଲାଭ କରିଥାଏ । ଏହି ଦୁଇଟି ପତ୍ରିକା ସେତେବେଳେ ରେଭେନ୍‌ସାର ଛାତ୍ରସମାଜକୁ ଉଚ୍ଚମାନର ସାହିତ୍ୟ ରଚନା କରିବାପାଇଁ ବିଶେଷ ପ୍ରେରଣା ଯୋଗାଇଛି । ପ୍ରଫେସର୍ ରତ୍ନାକର ପତିଙ୍କ ଅଧ୍ୟକ୍ଷତାରେ ସାପ୍ତାହିକ ସଙ୍ଗୀତ, ସାହିତ୍ୟ ଓ କବିତା ପାଠଚକ୍ରମାନ ଅନୁଷ୍ଠିତ ହେଉଥିଲା । ପ୍ରତିଥର ସେହି ସାଂସ୍କୃତିକ କାର୍ଯ୍ୟକ୍ରମରେ ନୀଳମାଧବ ବାବୁ ଅଂଶ ଗ୍ରହଣ କରି ପ୍ରଥମ କିମ୍ବା ଦ୍ୱିତୀୟ ହେଉଥିଲେ । ସେ ଯେଭଳି ଭଲ ଗୀତ ଗାଇ ପାରୁଥିଲେ, ସେହିଭଳି ସୁନ୍ଦର ସୁନ୍ଦର କବିତାମାନ ଲେଖି ପାରୁଥିଲେ । ପ୍ରାଥମିକ ଜୀବନରେ ଲେଖିଥିବା କବିତାଗୁଡ଼ିକ ପାଣ୍ଡୁଲିପି ଅବସ୍ଥାରେ ହିଁ ନଷ୍ଟ ହୋଇଯାଇଛି । ତାଙ୍କର ଛାତ୍ର ଜୀବନରେ ଲିଖିତ ଆଲୋଚନା ପ୍ରବନ୍ଧ ଗୁଡ଼ିକ ପ୍ରଫେସର ରତ୍ନାକର ପତି ଓ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା ।

ରେଭେନ୍‌ସା କଲେଜର 'କନିକା ଲାଇବ୍ରେରୀ'ରୁ ଅନେକ ଉପାଦେୟ ପୁସ୍ତକ, ବିଶେଷ କରି ପ୍ରାଚୀନ ଗ୍ରନ୍ଥଗୁଡ଼ିକ ପାଠ କରିବାର ସୁଯୋଗ ପାଇଥିଲେ । ଏଠାରେ ସେ ଯେଉଁ ମୂଲ୍ୟବାନ୍ ଓଡ଼ିଆ ସାହିତ୍ୟ ପତ୍ରିକା ଓ ସମ୍ବାଦପତ୍ରଗୁଡ଼ିକ ପଢ଼ିବାର ସୁଯୋଗ ଲାଭ କରିଥିଲେ, ସେଗୁଡ଼ିକ ହେଲା : 'ଉତ୍କଳ ଦୀପିକା', 'ଉତ୍କଳ ସାହିତ୍ୟ', 'ସମ୍ବଲପୁର ହିତୈଷିଣୀ', 'ମୁକୁର', 'ସତ୍ୟବାଦୀ' ଓ ଦୈନିକ 'ଆଶା' । ଫଳରେ ତାଙ୍କର ପ୍ରଜ୍ଞା ଓ ପ୍ରତିଭାର ବିକାଶ ହୋଇଥିଲା । ସେତେବେଳକୁ ସେ ନିୟମିତ ଅନ୍ୟ ଓଡ଼ିଆ ପତ୍ରିକା ମଧ୍ୟ ପାଠ କରୁଥିଲେ । ରେଭେନ୍‌ସା କଲେଜରେ ଯେଉଁ ବିଦ୍ୱାନ୍ ଅଧ୍ୟାପକମାନେ ତାଙ୍କୁ ପାଠ ପଢ଼ାଇଥିଲେ, ସେମାନେ ହେଲେ :

(୧) ପ୍ରଫେସର୍ ଡ.ପ୍ରାଣକୃଷ୍ଣ ପରିଜା – (ଅଧ୍ୟକ୍ଷ)
(୨) ଡକ୍ଟର୍ ଶ୍ୟାମଚନ୍ଦ୍ର ତ୍ରିପାଠୀ – (ଅଧ୍ୟକ୍ଷ)
(୩) ପ୍ରଫେସର୍ ରତ୍ନାକର ପତି – (ଦର୍ଶନ ଶାସ୍ତ୍ର)
(୪) ପ୍ରଫେସର୍ ଆର୍ତ୍ତବଲ୍ଲଭ ମହାନ୍ତି – (ସାହିତ୍ୟ ଓ ସଂସ୍କୃତ)
(୫) ପ୍ରଫେସର୍ ଗିରିଜାଶଙ୍କର ରାୟ – (ଇଂରାଜୀ)
(୬) ପ୍ରଫେସର୍ ବିପିନବିହାରୀ ରାୟ – (ଲଜିକ୍)
(୭) ପ୍ରଫେସର୍ ଲକ୍ଷ୍ମୀକାନ୍ତ ଚୌଧୁରୀ – (ସଂସ୍କୃତ)

ନୀଳମାଧବ ୧୯୩୬ ରୁ ୧୯୩୮ – ପର୍ଯ୍ୟନ୍ତ ରେଭେନ୍‌ସା କଲେଜର ଛାତ୍ର ହେବାର ସୌଭାଗ୍ୟ ଲାଭ କରିଥିଲେ । ପାଠପଢ଼ା ଶେଷ କରିବା ପରେ ମଧ୍ୟ ପ୍ରଫେସର ରତ୍ନାକର ପତିଙ୍କ ସହିତ ତାଙ୍କର ମଧୁର ସମ୍ପର୍କ ଅତୁଟ ରହିଥିଲା । କେବେ କେମିତି ପତ୍ରାଳାପ ବି ହେଉଥିଲା । ସେଇ ପତ୍ରଗୁଡ଼ିକ ଆଉ ନୀଳମାଧବ ସାଇତି କରି ରଖି ପାରି ନଥିଲେ । ତାରିଖ ୨୨–୨–୧୯୬୯ ମସିହାରେ ପ୍ରଫେସର୍ ରତ୍ନାକର ପତି ସ୍ୱର୍ଗାରୋହଣ କଲେ । ପୂଜ୍ୟଗୁରୁ ପ୍ରଫେସର୍ ପତିଙ୍କ ମୃତ୍ୟୁରେ ତାଙ୍କ ପ୍ରିୟଛାତ୍ର ତରୁଣ କବି ନୀଳମାଧବ ଶୋକ ସାଗରରେ ବୁଡ଼ି ଯାଇଥିଲେ ।

୧୯୬୫ ମସିହାରେ ଡ.ମାୟାଧର ମାନସିଂହ ଖଲିକୋଟ୍ କଲେଜରେ ପ୍ରିନ୍‌ସିପାଲ ଥାଆନ୍ତି । ନୀଳମାଧବ ସେତେବେଳେ ବ୍ରହ୍ମପୁରରେ ଚାକିରି କରୁଥାନ୍ତି । ସେତେବେଳ ପର୍ଯ୍ୟନ୍ତ (୧୯୩୮ ରୁ ୧୯୬୫ : ସୁଦୀର୍ଘ ୨୭ ବର୍ଷ) ନୀଳମାଧବ ଗ୍ରାଜୁଏଟ୍ ହୋଇ ନଥିଲେ । ଦିନେ ଡ.ମାନସିଂହ ଅଧ୍ୟକ୍ଷ ପ୍ରକୋଷ୍ଠରେ ବସିଥାନ୍ତି । ନୀଳମାଧବ ଦୁଇଟି ଫର୍ମ ପୂରଣ କରି ତାଙ୍କ ଟେବୁଲ୍ ଉପରେ ରଖିଦେଲେ । ମାନସିଂହ ଫର୍ମ ଦୁଇଟିକୁ ପଢ଼ି ପ୍ରାୟ ଦଶମିନିଟ୍ ପର୍ଯ୍ୟନ୍ତ କେବଳ ଠୋ ଠୋ

ହସିଲେ । ଡ.ମାନସିଂହ ସେତେବେଳ ପର୍ଯ୍ୟନ୍ତ ଜାଣି ନଥିଲେ ଯେ ନୀଳମାଧବ ପାଣିଗ୍ରାହୀ ଗ୍ରାଜୁଏସନ୍ କମ୍ପ୍ଲିଟ୍ କରିନାହାନ୍ତି । ସେହି ଦୁଇଟି ଫର୍ମ ହେଉଛି ବି.ଏ. ପରୀକ୍ଷା ଦେବାପାଇଁ । ଗୋଟିଏ ଥିଲା ନୀଳମାଧବବାବୁଙ୍କର ଓ ଅନ୍ୟଟି ହେଉଛି ତାଙ୍କର ଦ୍ୱିତୀୟ ଝିଅ ଶାରଦାଙ୍କର । ଏକଥା ସେତେବେଳେ ସମଗ୍ର ଖଲିକୋଟ୍ କଲେଜରେ ଗୋଟିଏ ଚର୍ଚ୍ଚାର ବିଷୟ ହୋଇଥିଲା । ୧୯୬୫ ମସିହାରେ ନୀଳମାଧବ ଖଲିକୋଟ୍ କଲେଜରୁ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

## ଗ୍ରନ୍ଥ ଅଧ୍ୟୟନ ଓ ପ୍ରତିଭାର ବିକାଶ :

ନୀଳମାଧବ ପାଣିଗ୍ରାହୀ ଜଣେ ସତ୍ୟସନ୍ଧ ଗବେଷକ ହେବାପାଇଁ ବ୍ୟାପକ ଭାବରେ ସମ୍ବଲପୁରୀ, ଓଡ଼ିଆ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଇଂରାଜୀ ତଥା ସମକାଳୀନ ଭାରତୀୟ ସାହିତ୍ୟ– ଏମନିକି ବିଶ୍ୱସାହିତ୍ୟ ମଧ୍ୟ ଅଧ୍ୟୟନ କରିଥିଲେ । ଓଡ଼ିଆରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ''ଶବ୍ଦତତ୍ତ୍ୱବୋଧ ଅଭିଧାନ'' ଏବଂ ସଂସ୍କୃତରେ ''ଅମରକୋଷ ଅଭିଧାନ'' ତାଙ୍କର ସବୁଠୁଁ ପ୍ରିୟ କୋଷଗ୍ରନ୍ଥ ଥିଲା । କ୍ରମାଗତ ଭାବରେ ସେ ଅଧ୍ୟବସାୟ ଚଳାଇ ଆସିଥିଲେ । ଅଧ୍ୟୟନ ଥିଲା ତାଙ୍କର ବ୍ୟସନ । ତାଙ୍କ ସଂଗ୍ରହରେ ଥିବା ଅନେକ ସଂସ୍କୃତ, ଓଡ଼ିଆ, ଇଂରାଜୀ, ବଙ୍ଗଳା, ହିନ୍ଦୀ ବହି ଓ ପତ୍ରିକା ଏହି ଉକ୍ତିର ଚାକ୍ଷୁଷ ପ୍ରମାଣ ।

ନୀଳମାଧବ ବାବୁ ଏକାଧାରରେ ଜଣେ ସ୍ପଷ୍ଟବକ୍ତା, ଅକୁତୋଭୟ ସାହିତ୍ୟିକ, ସତ୍ୟସନ୍ଧ ସାରସ୍ୱତ ଗବେଷକ, ଭାଷା ସାହିତ୍ୟ ଓ ଭାରତୀୟ ସଙ୍ଗୀତର ମୁଗ୍ଧ ଆଲୋଚକ । କବି ମାୟାଧର ମାନସିଂହଙ୍କ ଭାଷାରେ କହିବାକୁ ଗଲେ – ''ବିଦ୍ୟାଧର ହେବା ଯେତିକି ସହଜ, ବିଦ୍ୟାନୁରକ୍ତ ହେବା ସେତିକି ନୁହେଁ ।'' ସାହିତ୍ୟ ଓ ସଙ୍ଗୀତ ସାଧନାରେ ସାଧକ ନୀଳମାଧବ ତାଙ୍କର ସମଗ୍ର ଜୀବନ ଉତ୍ସର୍ଗ କରି ଦେଇଥିଲେ । ଏଠାରେ ସାହିତ୍ୟପ୍ରାଣ ସ୍ୱର୍ଗୀୟ କବି ଖଗେଶ୍ୱର ଶେଠଙ୍କ ''ଚଇତ-ଅମାସ୍ୟା'' କାବ୍ୟର ଗୋଟିଏ ପଦ ଉଦ୍ଧାର କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

''ସାହିତ୍ୟ ସାଧନା ନୁହେଁ ବିକା କିଣା–
ପଦାର୍ଥ ବା' ବ୍ୟବସାୟ;
ଲୋଡ଼ା ତହିଁ ତ୍ୟାଗ ଶ୍ରଦ୍ଧା–ଅନୁରାଗ,
ସୁଚିନ୍ତା ଅଧ୍ୟବସାୟ ।''

(ଉଦ୍ଧୃତ : ଖଗେଶ୍ୱର ଗ୍ରନ୍ଥାବଳୀ – ୧୯୭୩, ପୃ. ୬୨୮ )

**ବିବାହ :**

ସମ୍ବଲପୁର ସହର ନିବାସୀ ଉଚ୍ଚ ପଦସ୍ଥ ଅଫିସର ବିପିନ ବିହାରୀ ପୃଷ୍ଟିଗାରୀଙ୍କ ଜ୍ୟେଷ୍ଠା କନ୍ୟା ସୁମେଧା ଦେବୀଙ୍କୁ ୧୯୩୯ ମସିହାରେ ନୀଳମାଧବ ବିବାହ କରିଥିଲେ । ଏଠାରେ ସୂଚନାଯୋଗ୍ୟ ଯେ ବରଗଡ଼ର ବିଶିଷ୍ଟ ସାହିତ୍ୟିକ ଓ ସ୍ୱନାମଧନ୍ୟ ଶିକ୍ଷକ ଶଶିଭୂଷଣ ମିଶ୍ରଶର୍ମା (ବୁଢ଼ାମାଷ୍ଟ୍ରେ) ଏକଦା ସମ୍ବଲପୁର ଜିଲ୍ଲାସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ଶ୍ରୀ ବିପିନବିହାରୀ ପୃଷ୍ଟିଗାରୀ ମିଶ୍ରଶର୍ମାଙ୍କ ସହପାଠୀ ଥିଲେ । ବିବାହ ପରେ ଉଭୟ ପତିପତ୍ନୀଙ୍କ ଦାମ୍ପତ୍ୟ ଜୀବନ ହୋଇ ଉଠିଥିଲା ବିଦଗ୍‌ଧ, ରସାଣିତ, ବର୍ଣ୍ଣିଳ, ଛବିଳ ଏବଂ ସାଫଲ୍ୟ ବିମଣ୍ଡିତ । ନୀଳମାଧବ ଓ ସୁମେଧା ଦେବୀ ଉଭୟେ ଉଭୟଙ୍କୁ ନିବିଡ଼ ଭାବରେ ବୁଝିବାକୁ, ଜାଣିବାକୁ ଚେଷ୍ଟା କରିଥିଲେ । ଫଳରେ ତାଙ୍କର ବହୁକୁଟୁମ୍ବୀ ପାରିବାରିକ ଓ ସାମାଜିକ ଜୀବନ ସୁଖମୟ ହୋଇ ଉଠିଥିଲା । ଉଭୟ କବି ଓ କବିପତ୍ନୀ ପ୍ରେମ ରାଜ୍ୟରେ ପ୍ରଣୟର ନୀଡ଼ ରଚନା କରିଥିଲେ । ସୁମେଧା ଦେବୀ ନୀଳମାଧବଙ୍କ ପରି ଜଣେ ଯୋଗ୍ୟ ସାରସ୍ୱତ ପୁରୁଷଙ୍କୁ ସତେ ଯେପରି ଠିକ୍ ଠିକ୍ ନିର୍ବାଚନ କରି ବିବାହ କରିଥିଲେ ବୋଲି ମନେହୁଏ । ଠିକ୍ ସେହିପରି ସୁମେଧାଦେବୀଙ୍କ ଭଳି ପତିବ୍ରତା, ଆଦର୍ଶ ଗୃହିଣୀ ଓ ପତ୍ନୀଙ୍କ ମଧୁର ସଖ୍ୟ ଲାଭ କରି କବିଙ୍କ ଜୀବନ ଓ ପ୍ରତିଭା ସତେ ଯେପରି ଧନ୍ୟ ହୋଇ ଉଠିଥିଲା । ପ୍ରେମିକ କବି ମାନସିଂହଙ୍କ ଭାଷାରେ କହିବାକୁ ଗଲେ :

"ରାଣୀ ତୁମେ, ତବ ପୂଜାରୀ ଗୋ ଶତଶତ
ଅଗୁରୁ ଗନ୍ଧେ ଆମୋଦିତ ତବ ପଥ ।
ପ୍ରାଙ୍ଗଣେ ତବ ମେଳା କେତେ ରସିକର
ଧନିକ, ସୁଭଗ, ଲଭିବାକୁ ତବ କର ।
ସେ ସକଳଙ୍କୁ ବାଛି ଦରିଦ୍ର ଅନୁଗତେ
ସେ ମୋହନ କର କଣ୍ଠେ ମୋ' ଢ଼ାଳି
ବହ୍ନି ଅଧରେ ଗାଢ଼େ ଦେଇ ଢାଳି
ସମ୍ରାଟ ଯାହା କରିଦେଲ ରାଣି ମତେ
ଜଗତ ଯାଏନା ପ୍ରତେ ।"

('ଧୂପ'-ପ୍ରଥମ ସଂସ୍କରଣ ୧୯୩୧, ପୃ.୧୯)

ନୀଳମାଧବ ପାଣିଗ୍ରାହୀଙ୍କ ସାରସ୍ୱତ ଜଗତ ଯେପରି ବିଶାଳ, ସେହିପରି

ପରିବାର ମଧ୍ୟ ବୃହତ୍ । ତାଙ୍କର ସର୍ବମୋଟ ଦଶଟି ସନ୍ତାନ ଥିଲେ । ସେମାନେ ହେଲେ :

(୧) କ୍ଷଣଦା ବେହେରା
(୨) ଅଧ୍ୟାପିକା ସାରଦା ପାଣିଗ୍ରାହୀ – (ଅଧୁନା ସ୍ୱର୍ଗତା)
(୩) ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀ – ସ୍ୱାମୀ ଶ୍ରୀବଲ୍ଲଭ ପାଣିଗ୍ରାହୀ
(୪) ବିବେକ ଭୂଷଣ ପାଣିଗ୍ରାହୀ
(୫) ସଂଯୁକ୍ତା ଦାଶ
(୬) ନମିତା ପୁରୋହିତ
(୭) ପ୍ରଭାତ କୁମାର ପାଣିଗ୍ରାହୀ
(୮) ପ୍ରଶାନ୍ତ କୁମାର ପାଣିଗ୍ରାହୀ
(୯) ପ୍ରଦୀପ୍ତ କୁମାର ପାଣିଗ୍ରାହୀ
(୧୦) ପ୍ରଣତ କୁମାର ପାଣିଗ୍ରାହୀ (ଅଧୁନା ସ୍ୱର୍ଗତ)

ନୀଳମାଧବ ବାବୁ ତାଙ୍କର ସମସ୍ତ ପୁତ୍ର କନ୍ୟାଙ୍କୁ ସୁଶିକ୍ଷିତ, ସଭ୍ୟ, ସୁମଣିଷ କରି ପାରିଥିଲେ । ସେଥିପାଇଁ ତାଙ୍କୁ କେତେ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି ତାହା କଳନା କରିହେବ ନାହିଁ । ମାତ୍ର ସେ କେବେ ଧୈର୍ଯ୍ୟ ହରାଇ ନ ଥିଲେ କି ବିପଦରେ ଭାଙ୍ଗିପଡ଼ି ନ ଥିଲେ । ପାରିବାରିକ ଜଞ୍ଜାଳ ଭିତରେ ବୁଡ଼ିରହି ମଧ୍ୟ ଅବିଚଳିତ ଚିତ୍ତରେ ସାରସ୍ୱତ ସାଧନାରେ ହେଳା କରି ନ ଥିଲେ । ଏଥିରୁ ତାଙ୍କର ଏକନିଷ୍ଠ, ପ୍ରଜ୍ଞା–ଦୀପ୍ତ ବଳିଷ୍ଠ ଓ ପ୍ରୋଜ୍ଜ୍ୱଳ ବ୍ୟକ୍ତିତ୍ୱର ଆଭାସ ବାରିହୁଏ ।

## ଚାକିରି :

ବିବାହ ପରେ ପରେ ୧୯୪୦ ମସିହାରେ ନୀଳମାଧବ ସରକାରୀ ଚାକିରିରେ ଯୋଗଦାନ କରିଥିଲେ । ମାସକୁ ଦରମା ଥିଲା ପଚାଶ ଟଙ୍କା । ଦୀର୍ଘକାଳ ଅବକାରୀ ବିଭାଗର ବିଭିନ୍ନ ପଦବୀରେ କର୍ମ କରି ୧୯୭୭ ମସିହାରେ ଅବସର ଗ୍ରହଣ କରିଥିଲେ ।

## କବି ଗଡ଼ନାୟକଙ୍କ ସାନ୍ନିଧ୍ୟଲାଭ :

ନୀଳମାଧବ ପାଣିଗ୍ରାହୀଙ୍କ ଓଡ଼ିଆ ତଥା ସଂସ୍କୃତ ସାହିତ୍ୟରେ କେତେ ପ୍ରବେଶ ଥିଲା, ସେକଥା ଓଡ଼ିଶାର କେବଳ ଦୁଇଜଣ ବିଶିଷ୍ଟ ସାହିତ୍ୟିକ ଜାଣି–

ପାରିଥିଲେ । ସେମାନେ ହେଲେ ପଦ୍ମଶ୍ରୀ କବି ଡକ୍ଟର ମାୟାଧର ମାନସିଂହ ଓ ଅନ୍ୟଜଣକ ହେଲେ ପଦ୍ମଶ୍ରୀ କବି ରାଧାମୋହନ ଗଡ଼ନାୟକ । ଉଭୟ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ନୀଳମାଧବଙ୍କୁ ନିଜର ସାହିତ୍ୟିକ ବନ୍ଧୁ ଭାବରେ ସମ୍ମାନ ପ୍ରଦର୍ଶନ କରି ଆସିଛନ୍ତି । ନୀଳମାଧବ ପ୍ରଥମେ କବି ରାଧାମୋହନ ଗଡ଼ନାୟକଙ୍କ ସହିତ ୧୯୪୪ ମସିହାରେ ପରିଚିତ ହେଲାପରେ ସେହିବର୍ଷ କବି ମାୟାଧର ମାନସିଂହଙ୍କ ସହ ପରିଚିତ ହୋଇଥିଲେ ।

ଓଡ଼ିଆ ଓ ସଂସ୍କୃତ ଛନ୍ଦ ଉପରେ ପ୍ରଚୁର ଜ୍ଞାନଥିବାର କଥା ଜାଣିପାରି କବି ଗଡ଼ନାୟକ ନିଜେ ସ୍ୱତଃପ୍ରବୃତ୍ତ ହୋଇ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଫଳରେ କବି ଗଡ଼ନାୟକ ଓ କବି ନୀଳମାଧବଙ୍କ ମଧ୍ୟରେ ସାରସ୍ୱତ ସମ୍ପର୍କ ଅତି ଘନିଷ୍ଠ ଓ ନିବିଡ଼ରୁ ନିବିଡ଼ତର ହୋଇଥିଲା । କବିଙ୍କ ଜନ୍ମସ୍ଥାନ 'ଗୁଲୁଣ୍ଡା'ଗ୍ରାମକୁ କବି ଗଡ଼ନାୟକ ଯେତେବେଳେ ଆସୁଥିଲେ, ଆଠ ଦଶଦିନ ପର୍ଯ୍ୟନ୍ତ ତାଙ୍କ ଘରେ ରହି ଯାଉଥିଲେ । ଉଭୟଙ୍କ ମଧ୍ୟରେ କାବ୍ୟ ଚର୍ଚ୍ଚା, ସାହିତ୍ୟ ଚର୍ଚ୍ଚା ହେଉଥିଲା ଗଭୀର ରାତ୍ରି ପର୍ଯ୍ୟନ୍ତ । ଦିନକର କଥା । ଦୁଇବନ୍ଧୁ ସ୍ୱର ସାଧନା କରୁଥିଲେ । ରାତ୍ରିର ଦ୍ୱିତୀୟ ପ୍ରହରରେ କବି ପତ୍ନୀ ସୁମେଧା ଦେବୀ ଦୁଇଟି ଥାଳିରେ ଅନ୍ନବ୍ୟଞ୍ଜନ ଆଣି ରଖିଦେଲେ । ରାତି ପାହିଗଲା । ପରଦିନ ପ୍ରଭାତରେ ଆସି ଦେଖିଲେ ଦୁଇବନ୍ଧୁ ଶାସ୍ତ୍ରଚର୍ଚ୍ଚାରେ ମଜ୍ଜି ଯାଇଛନ୍ତି । ଅନ୍ନ ବ୍ୟଞ୍ଜନ ଯେମିତି ଥିଲା, ସେମିତି ଅଛି ।

କବି ଗଡ଼ନାୟକଙ୍କ ଖଣ୍ଡିଏ ବହି କିମ୍ବା କବିତାଟିଏ ପ୍ରକାଶିତ ହେଲେ ନୀଳମାଧବଙ୍କ ଆନନ୍ଦ କହିଲେ ନସରେ । ମୁଦ୍ରିତ ପୁସ୍ତକ ଦେଖି ସେ ଯେପରି ଆତ୍ମବିଭୋର ହୋଇ ପଢୁଥିଲେ । କବି ନିଜ ରଚିତ ଯେଉଁସବୁ ପୁସ୍ତକ ତାଙ୍କୁ ଉପହାର ଦେଇଥିଲେ, ସେଗୁଡ଼ିକ ଏଠାରେ ଉଦ୍ଧାର କରାଗଲା । ପ୍ରତ୍ୟେକ ପୁସ୍ତକର ପ୍ରଥମ ପୃଷ୍ଠାରେ କବି ଗଡ଼ନାୟକଙ୍କ ଦସ୍ତଖତ ଥାଇ ଲେଖାଥିଲା :

(୧) ବିପ୍ଳବୀ ରାଧାନାଥ –

ବନ୍ଧୁ ନୀଳମାଧବ ପାଣିଗ୍ରାହୀଙ୍କୁ .....
ରା. ଗଡ଼ନାୟକ
୪।୯।୪୪

(୨) କାଳିଦାସ –

ବନ୍ଧୁ ନୀଳମାଧବ ପାଣିଗ୍ରାହୀଙ୍କୁ .....
ରା. ଗଡ଼ନାୟକ
୪।୧୧।୪୪

(୩) ଉତ୍କଳିକା –

ପ୍ରୀତିଭାଜନ ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ କର କମଳରେ ...

ପ୍ରଣେତା

୨୭.୧.୪୬

୪. ପଶୁପକ୍ଷୀର କାବ୍ୟ – .

ପରମ ପ୍ରୀତିଭାଜନ କଳାବିତ୍‌ବନ୍ଧୁ

ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ ହାତରେ.....

ରାଧାମୋହନ ଗଡ଼ନାୟକ

୭।୧୧।୬୦

୫. ଧୂସର ଭୂମିକା –

ପରମ ପ୍ରୀତିଭାଜନ କଳାବିତ୍ ବନ୍ଧୁ

ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ ହାତରେ ...

୭।୧୧।୬୦

୬. ସୂର୍ଯ୍ୟ ଓ ଅନ୍ଧକାର –

ସାରସ୍ୱତ ସୁହୃଦ୍

ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କୁ

ସାଦର ସମର୍ପଣ ......

ରାଧାମୋହନ ଗଡ଼ନାୟକ

୨୩।୧।୧୯୭୫

୭. ହୀରାଖଣ୍ଡର ଗାଥା –

ବନ୍ଧୁ ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ ହାତରେ .....

ଗଡ଼ନାୟକ

୮।୫।୯୦

କବି ଗଡ଼ନାୟକ ଦେଇଥିବା ତାଙ୍କର ପ୍ରତ୍ୟେକ ପତ୍ରରେ ନୀଳମାଧବଙ୍କୁ ସ୍ନେହ ପ୍ରଦର୍ଶନ କରି ଜୀବନର ଜଣେ ପରମବନ୍ଧୁ ଭାବରେ ଗ୍ରହଣ କରିନେଇଥିଲେ । ତାଙ୍କର ପତ୍ରାବଳୀ ସମୂହ ପାଠକଲେ ଏହା ସ୍ପଷ୍ଟରୂପେ ଜଣାପଡ଼େ । ପାଠକେ, କବି ଗଡ଼ନାୟକଙ୍କ ଗୋଟିଏ ପତ୍ର ଦେଖନ୍ତୁ :

C/45 (Flat) unit-VIII

Bhubaneswar-3

ପ୍ରୀତିଭାଜନେଷୁ,

ଆପଣଙ୍କ ଗାଁ ଠିକଣାରେ ଚିଠି ଦେଇଥିଲି, କେମିତି ପାଇଲେ ନାହିଁ ? ..... ।

ଆପଣ ଓ ଆଉ କେତେଜଣ ବନ୍ଧୁଙ୍କର ସ୍ନେହ ଓ ଶୁଭେଚ୍ଛାରେ ସେ (ଦୀପକ) ଭଲ ହୋଇ ପାରିଛି । ଦୀପକର ଅପରେସନ୍ ପାଇଁ ଆପଣ ଯେଉଁ ଅଢ଼େଇ ଶହ ଟଙ୍କା ଆମକୁ ଦେଇ ଯାଇଥିଲେ, ତାହା ଆପଣଙ୍କ ହୃଦୟବତ୍ତା ଓ ମମତା ପ୍ରତୀକ । ଆମ ପରିବାର ପକ୍ଷରେ ତାହା କୋଟିନିଧି, ତେଣୁ ଶେଷରେ ଆମେ ତାହା ରଖିବାକୁ ବାଧ ହେଲୁଁ ।

ଆପଣଙ୍କର ସ୍ନେହ ମମତା ଆମ ପରିବାର ପ୍ରତି ଥାଉ-ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ।

ଜୋଇଁ ଓ ଶାରଦା, ତାଙ୍କ ପିଲାପିଲିଙ୍କୁ ସ୍ନେହ ଦେଇ ରହୁଚି ।

ଆପଣଙ୍କର

ରାଧାମୋହନ ଗଡ଼ନାୟକ

ଏଇଥିରୁ କବି ରାଧାମୋହନ ଗଡ଼ନାୟକ ଏବଂ ସାହିତ୍ୟିକ ନୀଳମାଧବ ପାଣିଗ୍ରାହୀଙ୍କ ମଧ୍ୟରେ ଥିବା ସାରସ୍ୱତ ସମ୍ପର୍କ ସହଜରେ ବୁଝିହୁଏ । ଜଣକ ପାଇଁ ଆରଜଣକର ହୃଦୟରେ କେତେ ସ୍ଥାନ ଅଛି, କେତେ ଉଦାରତା ଅଛି, ସେକଥା ଏହିଠାରେ ହିଁ ଜଣାପଡ଼େ । ନୀଳମାଧବ ମଧ୍ୟ କବି ଗଡ଼ନାୟକଙ୍କ କାବ୍ୟ ପ୍ରତିଭା ସମ୍ପର୍କରେ ଉଚ୍ଚମତ ପୋଷଣ କରି ଲେଖିଥିଲେ :

"ଗଡ଼ନାୟକ-ବାଣୀ ଅତି ବିଚିତ୍ର, ତାର ସମ୍ଭାର ବିପୁଳ, ପରିସର ବିରାଟ, ଗଭୀରତା ଅଥଳ । ସେ ବାଣୀର ଠାଣି ଓ ଛଟା ନାଟକୀୟ, ନାଟ୍ୟରେ ଯେପରି ସଂଳାପ, ଗୀତ, ବାଦ୍ୟ ଓ ନୃତ୍ୟର ସମାବେଶ, ଗଡ଼ନାୟକ ବାଣୀରେ ବି ସେଇଭଳି ସଂଳାପ, ଧ୍ୱନି, ଛନ୍ଦ ଓ ଦୋଳନର ପ୍ରତ୍ୟେକ ବିଭବ ବିଦ୍ୟମାନ । ବେଦବାଣୀବତ୍ ତାହା କାହିଁ ଉଦାତ୍ତ, କାହିଁ ଅନୁଦାତ୍ତ ଓ କାହିଁ ବା ସ୍ୱରିତ । ତାହା ଯେପରି ମନ୍ଦ୍ର ଗମ୍ଭୀର, ସେହିପରି ଲଳିତ ।"

(ଗଡ଼ନାୟକ ଅଭିନନ୍ଦନ ଗ୍ରନ୍ଥ – ୧୯୭୧, ପୃ.୬୯-୭୦)

ଜୀବନରେ ଜଣେ ପରମବନ୍ଧୁଙ୍କ ମହତ୍ ସାନ୍ନିଧ ଲାଭ ତାଙ୍କର ପ୍ରାଣକୁ ଯେଉଭଳି ପୁଲକିତ କରିଥିଲା, ତା ୨୧-୨-୨୦୦୦ ମସିହାରେ କବିବନ୍ଧୁ ଗଡ଼ନାୟକଙ୍କ ମୃତ୍ୟୁ ତାଙ୍କୁ ସେପରି ଗଭୀର ଭାବେ ବ୍ୟଥିତ ଓ ମଥିତ କରି ଦେଇଥିଲା । ଏହା ତାଙ୍କ ଜୀବନରେ ସବୁଠାରୁ ବଡ଼ ଆଘାତ ବୋଲି କବି ନୀଳମାଧବ କହିଥିଲେ ।

ତା ୨୧-୨-୨୦୦୧ ଅପରାହ୍ଣରେ ଅନୁଗୁଳ ଜିଲ୍ଲା ସାହିତ୍ୟ ସଂସଦ ଆନୁକୂଲ୍ୟରେ ପ୍ରଫେସର ମୀନକେତନ ପୁରୋହିତଙ୍କ ସଭାପତିତ୍ୱରେ ଆୟୋଜିତ ପ୍ରଥମ ବାର୍ଷିକ ଶ୍ରାଦ୍ଧସଭାରେ ଡ.ପାଣିଗ୍ରାହୀ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । କବିବନ୍ଧୁ ଦିବଂଗତ ଗଡ଼ନାୟକଙ୍କ ସ୍ମୃତିଚାରଣ କରିବାପାଇଁ ଦଣ୍ଡାୟମାନ ହେଲେ । ମାତ୍ର ସଭାପତି ଓ ସମବେତ ସଜ୍ଜନମାନଙ୍କୁ ସମ୍ବୋଧନ କରି କବିବନ୍ଧୁଙ୍କ ନାମୋଚ୍ଚାରଣ କରିବାମାତ୍ରେ ଶୋକୋଚ୍ଛ୍ୱାସରେ ସଂଜ୍ଞା ହରାଇ ବିଳାପ କଲେ । ସହସ୍ରାଧିକ ଶ୍ରୋତାଙ୍କ ଚକ୍ଷୁରୁ ଶୋକାଶ୍ରୁ ଝରିଗଲା । ସଭାପତି ଅନନ୍ୟୋପାୟ ହୋଇ ସଭାର ସମାପ୍ତି ଘୋଷଣା କଲେ । ସାଂସଦ ଶ୍ରୀବଲ୍ଲଭ ପାଣିଗ୍ରାହୀ ସେହି ସଭାରେ ସମ୍ମାନିତ ଅତିଥି ରୂପେ ଯୋଗ ଦେଇଥିଲେ ।

## କବି ମାନସିଂହଙ୍କ ସାହଚର୍ଯ୍ୟ :

କବି ମାନସିଂହ 'Eastern state Agency'ର 'Educational Adviser' (ଶିକ୍ଷା ପରାମର୍ଶଦାତା) ପଦରେ ଥିବାବେଳେ "ଶଙ୍ଖ" ପତ୍ରିକାର ଶୁଭାରମ୍ଭ କରିଥିଲେ ୧୯୪୫ ମସିହାରେ । ସେହି ଅବସରରେ ନୀଳମାଧବଙ୍କ ସହିତ ପରିଚୟ ହୋଇଥିଲା ସମ୍ବଲପୁରରେ । ସେ ପରିଚୟ କ୍ରମେ କ୍ରମେ ସାରସ୍ୱତ ସମ୍ପର୍କରେ ରୂପାନ୍ତରିତ ହୋଇଗଲା । ଡ.ମାନସିଂହ ଥିଲେ ଅତି ଉଦାରମନା ବ୍ୟକ୍ତିତ୍ୱ । ତାଙ୍କ ହୃଦୟ ଥିଲା ଉଦାର ଓ ପ୍ରଶସ୍ତ । ନୀଳମାଧବଙ୍କ ସାରସ୍ୱତ ପ୍ରତିଭା କବି ମାନସିଂହଙ୍କୁ ବିଶେଷ ମୁଗ୍ଧ କରିଥିଲା । ଡ.ମାନସିଂହ ନୀଳମାଧବଙ୍କ ସାହିତ୍ୟ ଓ ସଙ୍ଗୀତ ସମ୍ପର୍କରେ ଲିଖିତ ନିମ୍ନୋକ୍ତ ପ୍ରବନ୍ଧକୁ "ଶଙ୍ଖ" ପତ୍ରିକାରେ ପ୍ରକାଶ କରିଥିଲେ । ସେଗୁଡ଼ିକ ହେଲା :

(୧) ଛନ୍ଦ ବିଚାର – (ପ୍ରବନ୍ଧ) – ଶଙ୍ଖ, ପ୍ରଥମବର୍ଷ ୧୦ମ ସଂଖ୍ୟା ୧୯୪୫

(୨) କି ଥିଲା କି ହେଲା ହାୟ – (ପ୍ରବନ୍ଧ) – ଶଙ୍ଖ, ପ୍ରଥମବର୍ଷ ୧୧ ଓ ୧୨ଶ ସଂଖ୍ୟା – ୧୯୪୫

(୩) ଶାସ୍ତ୍ରୀୟ ସଙ୍ଗୀତର ସାମାନ୍ୟ ବିଚାର – (ପ୍ରବନ୍ଧ) – ଶଙ୍ଖ, ଦ୍ୱିତୀୟ-ବର୍ଷ ଦ୍ୱିତୀୟ ସଂଖ୍ୟା, ମଇ, ୧୯୪୬

(୪) ଶାସ୍ତ୍ରୀୟ ସଙ୍ଗୀତର ନାଦ ଓ ଶ୍ରୁତିର ସୂଚନା – (ପ୍ରବନ୍ଧ) – ଶଙ୍ଖ, ଦ୍ୱିତୀୟବର୍ଷ ଚତୁର୍ଥସଂଖ୍ୟା, ଜୁଲାଇ ୧୯୪୬ ।

ମାନସିଂହଙ୍କ ଉଦାରତା ସମ୍ପର୍କରେ ଶ୍ରୀଯୁକ୍ତ ପାଣିଗ୍ରାହୀ କହିଛନ୍ତି :

"ତାକର୍ ମାନବିକ ସଦ୍‌ଗୁନର ଆର୍ ଉଦାରତାର୍ କଥା ମୁଇଁନାଇଁ

କହେଁ । ୧୯୪୫ ମସିହାଥି ତାକର୍ ସାଁଗେ ମୋର୍ ବ୍ୟକ୍ତିଗତ ପରିଚୟର୍ ସୌଭାଗ୍ୟ ମକେ ମିଳିଥିଲା ଆର୍ ତାକର୍ ମହାପ୍ରସ୍ଥାନ୍ ତକ୍ ସେ ମକେ ଭାୟବାଗିର୍ ଦେଖୁଥିଲେ; ମୋର୍ ବାଗିର୍ ପ୍ରତିଭାହୀନ ଅଧମ୍‌ଟାକେ ସେ ସାହିତ୍ୟର୍ ଇଲାକାକେ ଆନିଥିଲେ । "ଶଂଖ" ପତ୍ରିକାଥି ମୋର୍ କଛା ରଚନା କେତେଟାକେ ଠାନ୍ ଦେଇକରି ସାରା ଜୀବନ୍ ତହଁକେଇ ଥିଲେ ।" (ଅଗ୍ନିଶିଖା : ତା ୮-୧୨-୨୦୦୧)

କବି ମାନସିଂହଙ୍କ ପ୍ରେରଣା ଓ ଉତ୍ସାହରେ ଅନୁପ୍ରେରିତ ହୋଇ ପରବର୍ତ୍ତୀ କାଳରେ ନୀଳମାଧବ ବାବୁ ସେ କାଳର "ଝଙ୍କାର" ଭଳି ଉଚ୍ଚାଙ୍ଗ ସାହିତ୍ୟ ପତ୍ରିକାରେ ଦୀର୍ଘ ପ୍ରବନ୍ଧ ଓ ସମାଲୋଚନା ଲେଖି ସମଗ୍ର ଓଡ଼ିଶାରେ ଚହଳ ସୃଷ୍ଟି କରିପାରିଥିଲେ । ଡକ୍ଟର ମାୟାଧର ମାନସିଂହଙ୍କ ଲିଖିତ "History of oriya Literature" ଗ୍ରନ୍ଥର ସଂଶୋଧନ, ପରିବର୍ତ୍ତନ ଆଦି କାର୍ଯ୍ୟରେ ନିଜର ବହୁମୂଲ୍ୟ ସମୟ ବିନିଯୋଗ କରି ପାଣିଗ୍ରାହୀ ମହାଶୟ କବି ଡକ୍ଟର୍ ମାନସିଂହଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ କରିଥିଲେ । ତାଙ୍କ ସମ୍ପର୍କରେ ଏଭଳି ବହୁ ତଥ୍ୟ ରହିଛି । ଏପରି ସାରସ୍ୱତ ସହଯୋଗକୁ ଭୁଲିନପାରି କବି ମାନସିଂହ ତାଙ୍କର କୌଣସି ଏକ ପତ୍ରରେ ନୀଳମାଧବଙ୍କୁ ନିଜର "ସୁଖ ଓ ଦୁଃଖର ପ୍ରିୟତମ ବାନ୍ଧବ" ବୋଲି ଉଲ୍ଲେଖ କରିଥିଲେ । ଏଇଥିରୁ କବି ଡ. ମାନସିଂହ ଓ ସାହିତ୍ୟିକ ନୀଳମାଧବଙ୍କ ସାରସ୍ୱତ ସମ୍ପର୍କ ସହଜରେ ଅନୁମେୟ ।

## ସାହିତ୍ୟ ସାଧନା :

ସଙ୍ଗୀତ ଯାହାଙ୍କ ଜୀବନ, ସାହିତ୍ୟ ଯାହାଙ୍କ ପ୍ରାଣ, ସାରସ୍ୱତ ସାଧନା ଯାହାଙ୍କ ତପସ୍ୟା, କାବ୍ୟଚର୍ଚ୍ଚା ଓ ସାହିତ୍ୟ ଚର୍ଚ୍ଚା ଜଗତର ସେହି ଅପ୍ରତିଦ୍ୱନ୍ଦ୍ୱୀ ବାଣୀଦୂତ ଜଣକ ହେଉଛନ୍ତି ଓଡ଼ିଶାର ଖ୍ୟାତନାମା ସାହିତ୍ୟିକ, ପ୍ରାବନ୍ଧିକ, ସମାଲୋଚକ ଓ ସଙ୍ଗୀତ ବିଶାରଦ-ଡକ୍ଟର୍ ନୀଳମାଧବ ପାଣିଗ୍ରାହୀ । ତାଙ୍କର ଜୀବନ ଯେପରି ତପସ୍ୟା ମଧ୍ୟ ସେହିପରି । ତାଙ୍କର ଜୀବନ ଓ ପ୍ରତିଭାକୁ ତନ୍ନ ତନ୍ନ କରି ବିଶ୍ଳେଷଣ ଓ ଅନୁଧ୍ୟାନ କଲେ ସହଜରେ ବୁଝାପଡ଼େ ଯେ, ସଙ୍ଗୀତ ଚର୍ଚ୍ଚାକୁ ଛାଡ଼ି ତାଙ୍କର ଆଉ ଅନ୍ୟ ଆଗ୍ରହ ନ ଥିଲା । ସୁଦୀର୍ଘ ୭୦ ବର୍ଷ ଧରି ଓଡ଼ିଶୀ ସଙ୍ଗୀତ, ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ସଙ୍ଗୀତ ଏବଂ ସର୍ବଭାରତୀୟ ସ୍ତରରେ ଶାସ୍ତ୍ରୀୟ, ସୁଗମ ଓ ଲୋକ ସଙ୍ଗୀତ ଉପରେ ଗବେଷଣା କରି ଗବେଷଣାଲବ୍ଧ ତତ୍ତ୍ୱ ସବୁକୁ ଲିପିବଦ୍ଧ କରିଛନ୍ତି । ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ସଙ୍ଗୀତର ମାନ୍ୟତା

ଓ ମର୍ଯ୍ୟାଦା ଆଣିଦେବା ପାଇଁ ଅକ୍ଲାନ୍ତ ପରିଶ୍ରମ କରିଥିଲେ । ଏହା ଥିଲା ତାଙ୍କ ଜୀବନର ଏକ ସ୍ୱପ୍ନ । ତାଙ୍କ ଜୀବଦ୍ଦଶାରେ ସାକାର ହୋଇପାରିଲା ନାହିଁ । ମାତ୍ର ଦିନେ ନା ଦିନେ ନିଶ୍ଚୟ ସାକାର ହେବ । ନୀଳମାଧବ ଶ୍ରୀଜୟଦେବଙ୍କ 'ଗୀତଗୋବିନ୍ଦ'ର ପ୍ରତ୍ୟେକ ପ୍ରବନ୍ଧର ସ୍ୱରଲିପି ରଚନା କରିଯାଇଛନ୍ତି । ସୁରମଣି ରଘୁନାଥ ପାଣିଗ୍ରାହୀ ସେହି ସ୍ୱରଲିପି ଅନୁସାରେ 'ଗୀତ ଗୋବିନ୍ଦ' ଗାନକରି ସମଗ୍ର ଭାରତରେ ତଥା ବିଶ୍ୱରେ ଜଣେ ଶାସ୍ତ୍ରୀୟ ସଙ୍ଗୀତଜ୍ଞ ରୂପେ ସୁନାମ ଅର୍ଜନ କରିଛନ୍ତି ।

ଡକ୍ଟର ନୀଳମାଧବ ପାଣିଗ୍ରାହୀ ଜଣେ ପ୍ରତିଭାବାନ୍ ସୁର ସାଧକ, ସଙ୍ଗୀତ ସମାଲୋଚକ, ହିନ୍ଦୁସ୍ଥାନୀ-କର୍ଣ୍ଣାଟକୀ-ଓଡ଼ିଶୀ ସଙ୍ଗୀତ ପଦ୍ଧତିର ତୁଳନାତ୍ମକ ଗବେଷକ । ନିମ୍ନୋକ୍ତ ଛଅ ଖଣ୍ଡ ଗ୍ରନ୍ଥ ସେହି ମହାନ୍ ସାଧକଙ୍କ ଜୀବନବ୍ୟାପୀ ସଙ୍ଗୀତ ସାଧନାର ସ୍ୱାକ୍ଷର ବହନ କରି କାଳକାଳକୁ ବଞ୍ଚି ରହିଥିବ । ଆଗାମୀ ପିଢ଼ିର ଶାସ୍ତ୍ରୀୟ ସଙ୍ଗୀତଜ୍ଞମାନଙ୍କ ପାଇଁ ପ୍ରେରଣା ଓ ପ୍ରୋତ୍ସାହନର ଅସରନ୍ତି ଉତ୍ସ ହୋଇ ରହିଥିବ । ଛଅ ଖଣ୍ଡ ଦୁର୍ଲ୍ଲଭ ସଂସ୍କୃତ ପୋଥି ହେଲା :

(୧) ଗୀତ ପ୍ରକାଶ ପ୍ରବେଶିକା – ୧୯୮୦
(୨) ସଙ୍ଗୀତ କଳ୍ପଲତିକା – ୧୯୮୪
(୩) ଅଭିନୟ ଦର୍ପଣ ପ୍ରକାଶ – ୧୯୯୫
(୪) ସଙ୍ଗୀତ କୌମୁଦୀ – ୧୯୯୫
(୫) ଗୀତ ପ୍ରକାଶ ବୋଲି –
(୬) ସଙ୍ଗୀତାର୍ଣ୍ଣବ ଚନ୍ଦ୍ରିକା –

ଓଡ଼ିଆ ଭାଷାରେ ଯେଉଁ ମୂଲ୍ୟବାନ୍ ଗ୍ରନ୍ଥ ରଚନା କରିଥିଲେ, ସେଗୁଡ଼ିକ ହେଲା :

ଓଡ଼ିଆ :–

(୧) ଭାରତୀୟ ସଙ୍ଗୀତ – ୧୯୬୫
(୨) ସଙ୍ଗୀତ ସମାର୍ଜନୀ – ୧୯୭୧
(୩) ଗୀତ ଗୋବିନ୍ଦ – ୧୯୮୨
(୪) ଓଡ଼ିଶାରେ ଉପକୂଳିଆ ପ୍ରଦେଶ କେବେ ଓ କାହିଁକି ? – ୧୯୯୨
(୫) ଓଡ଼ିଶା ସହିତ ସମ୍ବଲପୁର ମିଶ୍ରଣର ଅଜ୍ଞାତ ଦିଗନ୍ତ – ୧୯୯୨
(୬) ଜ୍ୟୋତିର୍ମୟୀ – ୧୯୯୪
(୭) ଗୀତଗୋବିନ୍ଦର ସାଙ୍ଗୀତିକ ଦିଗ୍‌ଦର୍ଶନ – ୧୯୯୭
(୮) ଗୀତଗୋବିନ୍ଦ ଓ ଜୟଦେବ – ୨୦୧୩

## ପିତାମାତାଙ୍କ ମହାପ୍ରୟାଣ :

ନୀଳମାଧବଙ୍କ ବାପା ପଣ୍ଡିତ ଦୈତ୍ୟାରି ପାଣିଗ୍ରାହୀ ୧୯୬୪ ମସିହାରେ ସ୍ୱର୍ଗାରୋହଣ କରିଥିବା ବେଳେ ତାଙ୍କ ମାଆ ରାଧିକା ଦେବୀ ୧୯୭୭ ମସିହାରେ ଇହଲୀଳା ସମ୍ବରଣ କରିଥିଲେ ।

## କବିଙ୍କ ପତ୍ନୀ ବିୟୋଗ :

ନୀଳମାଧବଙ୍କ ସୁଖଦୁଃଖର ସଙ୍ଗିନୀ ମହୀୟସୀ ସୁମେଧା ଦେବୀ ତା ୨୨-୨-୧୯୮୨ ମସିହା ମହାଶିବରାତ୍ରିର ଲକ୍ଷ ପ୍ରଦୀପ ଆଲୋକରେ ଇହଲୀଳା ସମ୍ବରଣ କଲେ । ପ୍ରାଣ-ପ୍ରଣୟିନୀ-ପତ୍ନୀଙ୍କ ବିୟୋଗରେ କବିଙ୍କ ଲେଖନୀରୁ ଝରିଯାଉଥିଲା ନିମ୍ନୋକ୍ତ ଶୋକ-କବିତା । ''ଓଃ ତାଜ୍'' କବିତାରେ କବି ନୀଳମାଧବ ପାଣିଗ୍ରାହୀ ଲେଖିଥିଲେ :

''ଦୁନିଆଁରୁ ତୁମେ ନେଇଚ ବିଦାୟ ସଖି !
ବିଦାୟ ଆଗରୁ ଦେଲ ନାହିଁ ଶେଷ ଦେଖା,
ଚାଲିଗଲ ଏକା ଏକା,
ଏକା କରି ମୋତେ ଏ ପାରେ ଦେଇଚ ରଖି,
ଜାଣି ପାରୁନାହିଁ, କି ଥିଲା ତୁମର ଅନ୍ତିମ ଅଭିଳାଷ,
ରହିଗଲା ଭାର ଉହ୍ୟ, ଅପ୍ରକାଶ !
ତୁମ ସ୍ମୃତି ଲାଗି କଅଣ ଗଢ଼ିବି ରାଣୀ !
ଭାବୁଅଛି ବସି, ସହଜେ ପାରୁନି ଜାଣି ।''

(ପାଞ୍ଚଜନ୍ୟ – ୩/୧ : ଜାନୁୟାରୀ ମାର୍ଚ୍ଚ ୧୯୮୨, ପୃ.୧୭୩)

କବି ନୀଳମାଧବଙ୍କ ଦାମ୍ପତ୍ୟ ପ୍ରେମ କେତେ ନିବିଡ଼, କେତେ ଉଚ୍ଚକୋଟୀର, ସେହି ପ୍ରେମ ମହାମହିମାରେ ହୋଇଛି କେତେ ମହିମାନ୍ୱିତ, ତାହା ସହୃଦୟ ପାଠକ ପାଠିକା, ପ୍ରେମିକ-ପ୍ରେମିକା ଥରେ ବିଶେଷ ଲକ୍ଷ୍ୟ କରିବାର କଥା । ଗଭୀର ଧ୍ୟାନଲୋକରୁ ହିଁ ସଫଳ କବିତାର ସୃଷ୍ଟି । ଗଭୀର କଳ୍ପନା ନ ଥିଲେ, ପ୍ରେମର ବିଚିତ୍ର ଅନୁଭୂତି ନ ଥିଲେ ଏଭଳି ସଫଳ କବିତାର ରୂପାୟନ ହୁଏନା । କାବ୍ୟ ଚିନ୍ତାରେ କବି ହୃଦୟର ପ୍ରେମୋଚ୍ଛ୍ୱାସକୁ ଯେଭଳି ପରିପ୍ରକାଶ କରିଛନ୍ତି ତାହା ,ଅନବଦ୍ୟ ଓ ହୃଦଭେଦ୍ୟ ।

କବିପତ୍ନୀ ସୁମେଧାଦେବୀଙ୍କ ପତିବ୍ରତା ଓ ମହାନତାକୁ ଲକ୍ଷ୍ୟକରି ସେତେବେଳେ କବି ରାଧାମୋହନ ଗଡ଼ନାୟକ ଲେଖିଥିଲେ :

''ତମସା ତଟର କେଉଁ ବନସ୍ତ ଅଞ୍ଚଳେ
ନିଦାରୁଣ ବ୍ୟାଧ ଏକ ସେ ଯୁଗ ପ୍ରଭାତେ
ମାରିଦେଲା ଖର ଶରାଘାତେ
ପ୍ରିୟା ମୁଗ୍‌ଧ ପ୍ରେମାର୍ତ୍ତ କ୍ରୌଞ୍ଚରେ,
ସେଥିପାଇଁ
ବିଶ୍ୱର ଦରଦୀ କବି ଶୋକ ଶ୍ଲୋକ ଉଠିଥିଲେ ଗାଇ ।

ହେ ବିଦ୍‌ଗଧ୍ ବନ୍ଧୁ ଯାରେ ଧରିଥିଲ ନିଭୃତ ହିଆରେ
ଲହୁ ଲୁହ ପ୍ରୀତିରେ ଅଭିନ୍ନ,
କାଳ ଆସି ତୁମର ସେ ଜୀବନପ୍ରିୟାରେ
ତୁମଠାରୁ କରି ଦେଲା ଛିନ୍ନ ।

କବି ତୁମେ, ଗୁଣୀ ତୁମେ, କଳାକାର ତୁମେ
ଢ଼ାଳି ଢ଼ାଳି ଅଶ୍ରୁର ବୀଥିକା
ଇୟୁରି ଡାଇସ୍ ପାଇଁ ଅର୍ଫିୟୁସ୍ ପରି
ବୀଣାଧରି
ତୁମେ ନିଜେ ଗାଇଅଛ ବିରହର ବିଧୁର ଗୀତିକା ।

× × ×

'ସୁମେଧା' ତୁମର ଥିଲେ
ଅନୁରକ୍ତା, ତୁମ ମନ ଚାହିଁ
ପ୍ରେମର ପୂଜାରି ଥିଲ
ନୁହ ତୁମେ ଖାଲି ପାଣିଗ୍ରାହୀ ।
ତୁମଠୁ ସମ୍ବାଦ ପାଇ
ଯାଇଥିଲି ଭେଟିବାର ପାଇଁ
ତାହା ଜଳଖିଆ ଖାଇ
ପୂର୍ବପରି
ଦୁଇ ତିନି ଘଣ୍ଟା ଧରି
କେତେ ସୁଖ ଦୁଃଖ ହେଲୁଁ

ସତେ ଯେହ୍ନେ ତାର ଶେଷ ନାହିଁ ।
(ସୁମେଧା ଦେବୀ ସ୍ମରଣିକା – ୧୯୮୩, ପୃ.୨୮-୨୯)

## ଆକସ୍ମିକ ଝଡ଼ :

ମଣିଷ ଜୀବନରେ କେବେ କେବେ ଆକସ୍ମିକ ଝଡ଼, ମଧ୍ୟ ଉପସ୍ଥିତ ହୋଇଥାଏ । ଠିକ୍ ସେହିପରି ଏକ ଝଡ଼ ସୃଷ୍ଟି ହୋଇଥିଲା ନୀଳମାଧବ ପାଣିଗ୍ରାହୀଙ୍କ ଜୀବନରେ । ପ୍ରଣତ କୁମାର ଥିଲେ ନୀଳମାଧବଙ୍କ କନିଷ୍ଠ ସନ୍ତାନ । ସେ ଜଣେ ଅତି ମେଧାବୀ ଛାତ୍ର ଥିଲେ । କନିଷ୍ଠ ସନ୍ତାନ ବୋଲି ନୀଳମାଧବ ତାଙ୍କୁ ଅତ୍ୟନ୍ତ ସ୍ନେହ ଓ ଆଦର କରୁଥିଲେ । ପୁତ୍ର ପ୍ରଣତ କୁମାରଙ୍କ ଆଗ୍ରହ ଓ ପ୍ରଯତ୍ନରେ "ମାହାଭାରତ କଥା" ଆଦିପର୍ବର ପ୍ରଥମଭାଗ ପ୍ରକାଶିତ ହୋଇ ସାରିଥାଏ । ସେହି ଆଦିପର୍ବର ଦ୍ୱିତୀୟଭାଗ ଲେଖୁଥିବା ସମୟରେ ତା ୫-୨-୧୯୯୬ ଦିନ ପ୍ରଣତ କୁମାରଙ୍କ ଆକସ୍ମିକ ବିୟୋଗ ହୋଇଯାଇଥିଲା । ଗୁଣୀପୁତ୍ରର ଏହି ବିୟୋଗବାର୍ତ୍ତା କବି ନୀଳମାଧବଙ୍କୁ ଗଭୀର ଭାବେ ବ୍ୟଥିତ କରି ପକାଇଥିଲା । ସେ ନିଜ ପୁତ୍ରଠାରୁ ବହୁତ କିଛି ଆଶା କରିଥିଲେ । କାରଣ ଇଂରାଜୀରେ ଗୋଟିଏ କଥା ଅଛି : "A Wise Son Maketh a glad Father." ଅର୍ଥାତ୍ ଜଣେ ଗୁଣୀପୁତ୍ର ତାର ପିତାକୁ ସୁଖୀ କରାଇଥାଏ । ପ୍ରଣତ କୁମାର ଥିଲେ ସତେ ଯେପରି ନୀଳମାଧବଙ୍କର ଜଣେ ଗୁଣୀପୁତ୍ର । ତେଣୁ ପୁତ୍ର ବିୟୋଗ ଜନିତ ଦୁଃଖରେ କବି ନୀଳମାଧବ ବହୁଦିନ, ବହୁସମୟ ଧରି ଅସୁଖୀ ଥିଲେ । ତାଙ୍କୁ ସାନ୍ତ୍ୱନା ଦେବାପାଇଁ ତାଙ୍କର ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବ ଏବଂ ସାଧାରଣ ଜନତାଠାରୁ ଆରମ୍ଭକରି ସର୍ବୋପରି ଓଡ଼ିଶାର ବହୁବିଜ୍ଞବ୍ୟକ୍ତି ତାଙ୍କ ନିକଟକୁ ଦୀର୍ଘ ପତ୍ରମାନ ଲେଖିଥିଲେ । ନୀଳମାଧବ ପାଣିଗ୍ରାହୀଙ୍କ ପାଖକୁ ଯେଉଁ ପତ୍ରଗୁଡ଼ିକ ଆସିଥିଲା, ସେଇ ପତ୍ରମାନଙ୍କ ମଧ୍ୟରେ ବିଶିଷ୍ଟ ପ୍ରାବନ୍ଧିକ ଓ ସମାଲୋଚକ ପ୍ରଫେସର ଡ.ମଧୁସୂଦନ ପତିଙ୍କ ପତ୍ରଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରଫେସର ପତି ଲେଖିଥିଲେ :

ମାନନୀୟେଷୁ,

ଏବେ ଗଙ୍ଗାପତ୍ର ପାଇ ଖୁବ୍ ଦୁଃଖ ଲାଗିଲା । ଏଭଳି ଦୁର୍ବିସହ କଷ୍ଟ ଆପଣଙ୍କୁ କିଭଳି ବ୍ୟଥିତ କରିଥିବ ତାହା ସହଜେ ବୁଝିହେବ । କିନ୍ତୁ ବିଧିର ନ୍ୟାୟ ବିଧାନ ଯେତେ ମର୍ମନ୍ତୁଦ ହେଲେ ସୁଦ୍ଧା ତାକୁ ସ୍ୱୀକାର ନ କରି ଆମର କ'ଣ ବା ବିକଳ୍ପ ଅଛି ? ଆପଣ ତ ଜ୍ଞାନୀ । ଈଶ୍ୱରଙ୍କ ଉପରେ ସବୁକିଛି ସମର୍ପଣ କରିଦେଇ ନିଜର ଚିରାଚରିତ ମାର୍ଗରେ ଆଗକୁ ଚାଲିବାକୁ ହେବ । ଭଗବାନ ଆପଣଙ୍କୁ

ସବୁଦିନପରି ବିକ୍ରମଶୀଳ ଓ ସୃଷ୍ଟିଶୀଳ କରି ରଖନ୍ତୁ, ଏହା ତାଙ୍କ ନିକଟରେ ମୋର ପ୍ରାର୍ଥନା । ଅସମୟରେ ଆମର ସ୍ମୃତି ଚାଲି ଯାଇଥିବା ଜୀବାତ୍ମାଙ୍କର ସମସ୍ତ ଆଧ୍ୟାତ୍ମିକ ଶାନ୍ତି ଲାଭ ହେଉ, ବିଭୁ ପଦରେ ଏହି ମିନତି । ଆପଣଙ୍କ ଓ ଆପଣଙ୍କର ପରିବାରବର୍ଗଙ୍କ ଏହି ଦାରୁଣ ଦୁଃଖରେ ସମଦୁଃଖୀ ।

ସମ୍ବଲପୁର ବିଶ୍ୱବିଦ୍ୟାଳୟ — ମଧୁସୂଦନ ପତି
ଜ୍ୟୋତିବିହାର — ତା ୧୬।୨।୯୬

ଏଠାରେ ସୂଚନାଯୋଗ୍ୟ ଯେ, ନୀଳମାଧବ ତାଙ୍କର ଜୀବିତାବସ୍ଥାରେ ଦୁଇଟି ପୁତ୍ରକନ୍ୟାଙ୍କୁ ହରାଇଥିଲେ । ସେମାନେ ହେଲେ ସର୍ବକନିଷ୍ଠ ପୁତ୍ର ପ୍ରଣତ କୁମାର ପାଣିଗ୍ରାହୀ ଓ ଦ୍ୱିତୀୟା କନ୍ୟା ଶାରଦା ପାଣିଗ୍ରାହୀ ।

## ଡି.ଲିଟ୍ ଉପାଧି :

ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ ଓ ଖ୍ୟାତନାମା ସାହିତ୍ୟିକ ଭାବରେ ନୀଳମାଧବ ପାଣିଗ୍ରାହୀ ବହୁ ପୁରସ୍କାର ଓ ସମ୍ମାନରେ ସମ୍ମାନିତ ହୋଇଥିଲେ । ତାଙ୍କର ବହୁମୁଖୀ ପ୍ରତିଭାରେ ମୁଗ୍ଧ ଓ ପ୍ରୀତହୋଇ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତା ୨-୭-୧୯୯୮ ମସିହାରେ ତାଙ୍କୁ ଡି.ଲିଟ୍ ଉପାଧିରେ ଭୂଷିତ କରିଥିଲେ । ସେହି ମାନପତ୍ରରେ ଲେଖାହୋଇଥିଲା ଏହିପରି :

Sambalpur University
ସମ୍ବଲପୁର ବିଶ୍ୱବିଦ୍ୟାଳୟ

on Behalf of the Sambalpur University, We the Chancellor and the Vice-chancellor hereby confer the Degree of

DOCTOR OF LITERATURE
(HONORIS CAUSA)
on
Nilamadhab Panigrahi

at the Eighteenth convocation of the University held on thursday, the 2nd day of July, 1998.

Vice-chancellor — Chancellor
(ପ୍ରିୟମ୍ବଦା ମହାନ୍ତି ହେଜ୍‌ମାଦୀ) — ସି.ରଙ୍ଗରାଜନ୍
(ସ୍ୱାକ୍ଷର) — (ସ୍ୱାକ୍ଷର)

ଡ.ନୀଳମାଧବ ପାଣିଗ୍ରାହୀ ଓଡ଼ିଶାର କେତେ ଯେ ସାରସ୍ୱତ-ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ଓ ସମ୍ମାନିତ ହୋଇଥିଲେ, ତାହାର କଳନା କରିବା

ସମ୍ଭବପର ନୁହେଁ । ଓଡ଼ିଶା ସାହିତ୍ୟ ଏକାଡ଼େମୀ, ସଙ୍ଗୀତ ନାଟକ ଏକାଡ଼େମୀ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଅନଗୁଳ ଜିଲ୍ଲା ସାହିତ୍ୟ ସଂସଦ ଆଦି ଅନୁଷ୍ଠାନର ସମ୍ମାନ ଉଲ୍ଲେଖନୀୟ । ଭାରତର ପ୍ରଧାନମନ୍ତ୍ରୀ ଡ.ମନମୋହନ ସିଂହ ଏବଂ ମହାମହିମ ରାଷ୍ଟ୍ରପତି ଶ୍ରୀ ପ୍ରଣବ ମୁଖର୍ଜିଙ୍କ ସୁପାରିସ୍ କ୍ରମେ ବିଶ୍ୱକବି ରବୀନ୍ଦ୍ରନାଥ ଟେଗୋରଙ୍କ. ସାର୍ଦ୍ଧ ଶତାବ୍ଦୀ ଜୟନ୍ତୀ ସମାରୋହରେ ଡ.ପାଣିଗ୍ରାହୀ ଟେଗୋର ସମ୍ମାନରେ ଭୂଷିତ ହୋଇଥିଲେ । ଏହି ସମ୍ମାନ ପ୍ରାପ୍ତି ସହିତ ଡ.ପାଣିଗ୍ରାହୀ ସର୍ବ–ଭାରତୀୟ ସ୍ତରର ଜଣେ ମହାନ୍ ଶାସ୍ତ୍ରୀୟ ସଙ୍ଗୀତଜ୍ଞ, କର୍ଣ୍ଣାଟକୀ–ହିନ୍ଦୁସ୍ଥାନୀ–ଓଡ଼ିଶୀ ସଙ୍ଗୀତର ସୁର ସାଧକ ଓ ତୁଳନାତ୍ମକ ଗବେଷକର ମାନ୍ୟତା ଓ ମର୍ଯ୍ୟାଦା ପ୍ରାପ୍ତ ହେଲେ । ଏହା ବାହାରେ ସେ "କେଳୁଚରଣ ପୁରସ୍କାର" ପ୍ରାପ୍ତ ହୋଇଥିଲେ । ଠିକ୍ ସେହିପରି ବହୁ ମର୍ଯ୍ୟାଦାବନ୍ତ "ଶାରଳା ପୁରସ୍କାର" ଦ୍ୱାରା ମନୋନୀତ ହୋଇ ମଧ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଭାରତ ସରକାରଙ୍କ "ପଦ୍ମଶ୍ରୀ" ଉପାଧିକୁ ମଧ ପ୍ରତ୍ୟାଖ୍ୟାନ କରିଥିଲେ । ନୀଳମାଧବ ପାଣିଗ୍ରାହୀ ନିଜର ପେନ୍‌ସନ୍ ପଇସା ୪୦ ହଜାର ଟଙ୍କା ସଂଗ୍ରହ କରି ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ଦାନ କରିଥିଲେ । ଏହି ଟଙ୍କାରେ "ନୀଳମାଧବ ପୁରସ୍କାର" ବୋଲି ଗୋଟିଏ ପୁରସ୍କାର ଘୋଷଣା କରାଯାଇଛି । ପ୍ରତିବର୍ଷ ସମ୍ବଲପୁରୀ ଭାଷାର ଜଣେ ଉପଯୁକ୍ତ ଗବେଷକଙ୍କୁ ଏହି ପୁରସ୍କାର ବିଶ୍ୱବିଦ୍ୟାଳୟ ପକ୍ଷରୁ ଦିଆଯାଉଛି ।

## କୋଶଳ ବ୍ୟାସଙ୍କ ପବିତ୍ର ମହାପ୍ରୟାଣ :

ତା ୨୮–୧୧–୨୦୧୨, ବୁଧବାର, ପୁଣ୍ୟତିଥି କାର୍ତ୍ତିକ ପୂର୍ଣ୍ଣମୀରେ ଡ.ନୀଳମାଧବ ପାଣିଗ୍ରାହୀଙ୍କ ଜୀବନ ଦୀପରୁ ତୈଳ ସରିଗଲା, ଜୀବନ ଦୀପ ଲିଭିଗଲା । ପବିତ୍ର କାର୍ତ୍ତିକ ପୂର୍ଣ୍ଣିମାର ଜ୍ୟୋସ୍ନା ପୁଲକିତ ରଜନୀରେ ସାରା ଓଡ଼ିଶାରେ ବିଶେଷକରି ପଶ୍ଚିମ ଓଡ଼ିଶାର କୋଣ ଅନୁକୋଣରେ ଶୋକର ଛାୟା ମାଡ଼ିଗଲା । ଫଳରେ ଉଭୟ ଓଡ଼ିଆ ଓ ସମ୍ବଲପୁର ଭାଷା ଏବଂ ସାହିତ୍ୟର ଗୋଟିଏ ଅପୂରଣୀୟ କ୍ଷତି ହେଲା । ତାଙ୍କର ବିୟୋଗବାର୍ତ୍ତା ସମଗ୍ର ଉତ୍କଳବାସୀ ଆଜି ମର୍ମେ ମର୍ମେ ଅନୁଭବ କରୁଛନ୍ତି । ତାଙ୍କ ଭଳି ଜଣେ "ପୂର୍ଣ୍ଣବିଦ୍ୱାନ୍" ବ୍ୟକ୍ତି ସମାଜରେ ଖୁବ୍ କମ୍ ଲୋକ ଦେଖାଯାନ୍ତି । ଆମେ ତାଙ୍କୁ ଶତାୟୁ ହେବେ ବୋଲି ଆଶା କରିଥିଲୁଁ । ସେ ଆଶା ଆଶାରେ ହିଁ ରହିଗଲା । ସେ ଦୀର୍ଘାୟୁ ଅର୍ଥାତ୍ ୯୩ ବର୍ଷର ଜୀବନକାଳ ଅତିବାହିତ କରିଥିଲେ । ତେବେ ନିଜକୁ ନିଜେ ସାନ୍ତ୍ୱନା ଦେବାପାଇଁ ଆମେ ତାହାଙ୍କୁ "ସହସ୍ର ଚନ୍ଦ୍ରଦର୍ଶୀ" ବୋଲି କହିଲେ ଅପ୍ରାସଙ୍ଗିକ

ହେବନାହିଁ । ''ସହସ୍ର ଚନ୍ଦ୍ରଦର୍ଶୀ''ର ସଂଜ୍ଞା ନିରୂପଣ କରି ମନ୍ତ୍ରଦ୍ରଷ୍ଟା ଋଷି ଲେଖିଛନ୍ତି :

''ସହସ୍ରେ ଦ୍ୱିତୀୟା ଚନ୍ଦ୍ର ଦେଖିବାପାଇଁ ମନୁଷ୍ୟ ପକ୍ଷେ ୮୩ ବର୍ଷ ୩ ମାସ ଆବଶ୍ୟକ; କିନ୍ତୁ ସେହି ସମୟ ମଧ୍ୟରେ ୨୭ଟା ମଳମାସ (ବଢ଼ାମାସ) ପଡ଼େ; ଉକ୍ତ ମଳମାସରେ ୨୭ଟା ୨ୟା ଚନ୍ଦ୍ର ଉଦିତ ହୁଏ । ଏଣୁ ୮୩ ବର୍ଷରୁ ୩ ବର୍ଷ ବାଦ୍ ଦେଲେ ୮୦ ବର୍ଷରେ ମନୁଷ୍ୟର ଏକ ସହସ୍ର ଚନ୍ଦ୍ର ଦର୍ଶନ ଯୋଗ ହୋଇଥାଏ । ମନୁଷ୍ୟ ୮୦ ବର୍ଷ ପାର କଲେ, ଆଉ ଯମପୁର ଦର୍ଶନ ଯୋଗ ହୋଇ ନଥାଏ ।''

(ପ୍ରବଚନ ତରଙ୍ଗ, ପୃ.୧୬୩)

ଅର୍ଥାତ୍ ପଣ୍ଡିତ ନୀଳମାଧବ ପାଣିଗ୍ରାହୀଙ୍କର ଆଉ ଯମପୁର ଦର୍ଶନ ହେବ ନାହିଁ । ସେ ମର୍ତ୍ତ୍ୟଲୋକରୁ ଯାଇ ସ୍ୱର୍ଗଲୋକରେ ବାସ କରିବେ । ଏଥିରେ ସନ୍ଦେହ ନାହିଁ । ପ୍ରଭୁ ଶ୍ରୀ ପରମେଶ୍ୱର ତାଙ୍କର ପବିତ୍ର ଆତ୍ମାକୁ ଶାନ୍ତି ଦିଅନ୍ତୁ; ସମଗ୍ର ଉତ୍କଳବାସୀଙ୍କର ଆଜି ଏହି ଐକାନ୍ତିକୀ ପ୍ରାର୍ଥନା । ତାଙ୍କର ବିୟୋଗ ଜନିତ ସମ୍ବାଦ ଓଡ଼ିଶାର ଦୈନିକ ଖବର କାଗଜ, ଯଥା– 'ସମାଜ', 'ସମ୍ବାଦ' ଓ 'ଧରିତ୍ରୀ'ରେ ପ୍ରକାଶିତ ହୋଇଥିଲା । ଦୈନିକ **'ସମାଜ'** ଲେଖିଥିଲେ :

''କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀ ପକ୍ଷରୁ ଟେଗୋର ସମ୍ମାନରେ ସମ୍ମାନିତ ବର୍ଷୀୟାନ୍ ସାହିତ୍ୟିକ ଓ ସଙ୍ଗୀତ ସାଧକ ଡ.ନୀଳମାଧବ ପାଣିଗ୍ରାହୀଙ୍କର ଆଜି ସକାଳ ପ୍ରାୟ ୯ଟା ୧୫ମିନିଟ୍‌ରେ ସମ୍ବଲପୁର ନିକଟସ୍ଥ ତାଙ୍କ ପୈତୃକ ଗ୍ରାମ ଗୁଲୁଣ୍ଡାସ୍ଥିତ ବାସଭବନରେ ପରଲୋକ ହୋଇଯାଇଛି । ମୃତ୍ୟୁ ବେଳକୁ ତାଙ୍କୁ ୯୪ ବର୍ଷ ହୋଇଥିଲା । ତାଙ୍କ ଦେହାବସାନରେ ଏକ ସ୍ୱର୍ଣ୍ଣିମ ସାରସ୍ୱତ ଅଧ୍ୟାୟର ଅନ୍ତ ଘଟିବା ସହିତ ଅଞ୍ଚଳର ବୌଦ୍ଧିକ ଜଗତରେ ଅପୂରଣୀୟ କ୍ଷତି ଘଟିଛି ।''

(ତା ୨୯-୧୧-୨୦୧୨ ଗୁରୁବାର, ସମ୍ବଲପୁର)

ଦୈନିକ **'ସମ୍ବାଦ'** ଲେଖିଥିଲେ :

''ବୁଧବାର, କାର୍ତ୍ତିକ ପୂର୍ଣ୍ଣିମା । ହିନ୍ଦୁ ଧର୍ମାବଲମ୍ବୀ ବିଶେଷକରି ଓଡ଼ିଆମାନଙ୍କର ସବୁଠୁ ପବିତ୍ର ଦିନ । ମନ୍ଦିର ଗୁଡ଼ିକରେ ଲୋକଙ୍କ ଧାଡ଼ି ଲାଗିଥିଲା । ଚାରିଆଡ଼େ ଭଜନ, କୀର୍ତ୍ତନ, ନାମଯଜ୍ଞ ଚାଲିଥିଲା । ନଈ ପୋଖରୀରେ ଭାସୁଥିବା ବୋଇତ ଗୁଡ଼ିକର ସଳିତାରୁ ଅଗ୍ନି ଶିଖା ଲିଭି ନ ଥିଲା । ଆଉ ଏହିଭଳି ପବିତ୍ର ବେଳାରେ ଦୀପ ଶିଖା ଲିଭିଗଲା ଜଣେ ମହାନ୍ ସାରସ୍ୱତ ସାଧକଙ୍କର । ବିଶିଷ୍ଟ ସାହିତ୍ୟିକ,

ସମ୍ବଲପୁରୀ ଭାଷାର ମହାନ୍ ସ୍ରଷ୍ଟା, ବିଶିଷ୍ଟ ସଙ୍ଗୀତ ବିଶାରଦ ପଣ୍ଡିତ ଡ.ନୀଳମାଧବ ପାଣିଗ୍ରାହୀଙ୍କର ଆଜି ୯୩ ବର୍ଷ ବୟସରେ ପରଲୋକ ହୋଇଯାଇଛି । .... ତାଙ୍କ ମୃତ୍ୟୁ ଖବର ପ୍ରଚାରିତ ହେବାମାତ୍ରେ ସମ୍ବଲପୁର ସମେତ ସମଗ୍ର ଓଡ଼ିଶାର ସାହିତ୍ୟ ଓ ସଙ୍ଗୀତ ଜଗତରେ ଶୋକର ଲହରୀ ଖେଳିଯାଇଥିଲା ।''.

(ତା ୨୯-୧୧-୨୦୧୨ ଗୁରୁବାର, ସମ୍ବଲପୁର)

ଦୈନିକ **'ଧରିତ୍ରୀ'** ଲେଖିଥିଲେ :

''ସମ୍ବଲପୁରୀ-କୋଶଳୀ ଭାଷା ସାହିତ୍ୟରେ ଏକ ଯୁଗର ଅବସାନ ଘଟିଛି । ସମ୍ବଲପୁରୀ-କୋଶଳୀ ଭାଷାରେ ମହାଭାରତର ପ୍ରଣେତା ତଥା ସଙ୍ଗୀତ ଶାସ୍ତ୍ରର ବିଦ୍ୱାନ୍ ପଣ୍ଡିତ ଡ.ନୀଳମାଧବ ପାଣିଗ୍ରାହୀଙ୍କ ପରଲୋକ ହୋଇଯାଇଛି । ବୁଧବାର ପୂର୍ବାହ୍ନ ୯ଟା ୧୫ ମିନିଟ୍‌ରେ ପବିତ୍ର କାର୍ତ୍ତିକପୂର୍ଣ୍ଣିମା ତିଥିରେ ସମ୍ବଲପୁର ଠାରୁ ୧୨ କି.ମି. ଦୂରବର୍ତ୍ତୀ ନିଜ ଗ୍ରାମ ଗୁଲୁଣ୍ଡାରେ ସେ ଶେଷନିଃଶ୍ୱାସ ତ୍ୟାଗ କରିଛନ୍ତି । ତାଙ୍କୁ ୯୩ ବର୍ଷ ବୟସ ହୋଇଥିଲା । ଡ.ପାଣିଗ୍ରାହୀଙ୍କ ପରଲୋକ ଖବର ପ୍ରଚାରିତ ହେବା ପରେ ରାଜ୍ୟ ତଥା ପଶ୍ଚିମ ଓଡ଼ିଶାର ବିଭିନ୍ନ ମହଲରେ ଶୋକ ପ୍ରକାଶ ପାଇଛି ।''

(ତା ୨୯-୧୧-୨୦୧୨, ଗୁରୁବାର, ସମ୍ବଲପୁର)

ସମ୍ବାଦପତ୍ର ବ୍ୟତୀତ ତାଙ୍କ ବିୟୋଗବାର୍ତ୍ତା ଅବଗତ ହୋଇ ଆସାମ ରାଜ୍ୟପାଳ ଓ ଓଡ଼ିଶାର ବିଶିଷ୍ଟ ବିଦ୍ୱାନ୍ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ମହାଶୟ ଦୁଃଖ ପ୍ରକାଶ କରି ଲେଖିଥିଲେ :

## ଶୋକବାର୍ତ୍ତା

ଡକ୍ଟର ନୀଳମାଧବ ପାଣିଗ୍ରାହୀଙ୍କ ମୃତ୍ୟୁ ସମ୍ବାଦ ପାଇ ମୁଁ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ । ସଙ୍ଗୀତ ଶାସ୍ତ୍ର ବିଷୟରେ ସେ ଜଣେ ବିଦଗ୍ଧ ପଣ୍ଡିତ ଥିଲେ । ସେ ଦିଗରେ ତାଙ୍କର ଅଧ୍ୟୟନ ଓ ଗବେଷଣାକୁ ବିଚାର କଲେ ଯେକୌଣସି ବ୍ୟକ୍ତି ତାଙ୍କର ପ୍ରଶଂସକ ନ ହୋଇ ରହିପାରିବ ନାହିଁ । ବିଶେଷ ଭାବରେ ଓଡ଼ିଶୀ ସଙ୍ଗୀତରେ ସେ ବହୁ ଗବେଷଣା କରିଥିଲେ । ଏହା ଛଡ଼ା ସାହିତ୍ୟ କ୍ଷେତ୍ରରେ ଏବଂ ସମ୍ବଲପୁରୀ ଭାଷାଭିତ୍ତିକ ବିଭିନ୍ନ ସାହିତ୍ୟକୃତି ପାଇଁ ତାଙ୍କୁ ସମ୍ବଲପୁର

ବିଶ୍ୱବିଦ୍ୟାଳୟ ତରଫରୁ ଭରତଚନ୍ଦ୍ର ସ୍ମାରକୀ ସହିତ ଡି.ଲିଟ୍ ପ୍ରଦାନ କରାଯାଇଥିଲା । ତାଙ୍କର ବିୟୋଗରେ ଓଡ଼ିଶା ତା'ର ଜଣେ ବିଶିଷ୍ଟ ବିଦ୍ୱାନ୍ ଓ ସଙ୍ଗୀତ ଶାସ୍ତ୍ର ବିଶାରଦଙ୍କୁ ହରାଇଲା ।

ତାଙ୍କ ବିୟୋଗରେ ମୁଁ ତାଙ୍କର ଶୋକ ସନ୍ତପ୍ତ ପରିବାରବର୍ଗ ଏବଂ ତାଙ୍କର ଜାମାତା ଶ୍ରୀବଲ୍ଲଭ ପାଣିଗ୍ରାହୀଙ୍କୁ ସମବେଦନା ଜ୍ଞାପନ କରିବା ସହିତ ସ୍ୱର୍ଗତ ଆତ୍ମାପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

**ଜାନକୀବଲ୍ଲଭ ପଟ୍ଟନାୟକ**
ରାଜ୍ୟପାଳ, ଆସାମ

(ଉଦ୍ଧୃତ : ଦୈନିକ ସମ୍ବାଦ : ତା ୯-୧୨-୨୦୧୨, ରବିବାର, ସମ୍ବଲପୁର)

## ଉପସଂହାର :

ସାମାଜିକ ଜୀବନରେ ସେ କେବେ ନିଜର ଦୈନନ୍ଦିନ ସୀମାରେଖା ଉଲ୍ଲଘଂନ କରି ନଥିଲେ । ଯାହା ସତ୍ୟ, ତାହା ସେ ସ୍ପଷ୍ଟ କରିଛନ୍ତି । ମିଥ୍ୟା ପ୍ରତିଶ୍ରୁତି ତାଙ୍କ ଜାତକରେ ନଥିଲା । ସେ ଜଣେ ଧାର୍ମିକ ଓ ସଦା ପରୋପକାରୀ ମଣିଷଟିଏ । ସତ୍ୟପ୍ରତି ତାଙ୍କର ଅନୁରାଗ ବେଶୀ । ସେ ଯାହା କହୁଥିଲେ ଅତି ସ୍ପଷ୍ଟଭାବେ କହୁଥିଲେ । ଅନ୍ୟ ଅର୍ଥରେ ସେ ଅକୁତୋଭୟ ଓ ସ୍ପଷ୍ଟବକ୍ତା । ତାଙ୍କର ସାମାଜିକ ଜୀବନ ପ୍ରଣାଳୀ ଥିଲା ଅତି ସାଧାରଣ । ସେ ଦେଖିବାକୁ ଯେମିତି ସାଦାସିଧା, କଥାବାର୍ତ୍ତାରେ, ମିଳାମିଶାରେ ସେପରି ଆତ୍ମୀୟତା ଫୁଟି ପଡୁଥିଲା । ଯେଉଁମାନେ ତାଙ୍କର ମଧୁର ସାନ୍ନିଧ ଲାଭ କରିଛନ୍ତି, ସେମାନେ ତାଙ୍କୁ କଦାପି ଭୁଲିପାରିବେ ନାହିଁ । ନୀଳମାଧବ ମରି ମଧ ଅମର । ଓଡ଼ିଆ ସାହିତ୍ୟ ଓ ସମ୍ବଲପୁରୀ-କୋଶଳୀ ସାହିତ୍ୟର ଇତିହାସରେ, ଶାସ୍ତ୍ରୀୟ ସଙ୍ଗୀତର ସୁର-ତାଳ-ଲୟରେ, ଜନ-ମାନସରେ ଓ ଜନତା-ସ୍ମୃତିରେ, ସରଳ-ନିରାଡ଼ମ୍ବର-ନିଷ୍ପାପ-ନିଷ୍କଳଙ୍କ ଜୀବନ-ଯାପନର ଆଦର୍ଶରେ, ଆଧ୍ୟାତ୍ମିକ ସାଧନାର ଏକ ଉଚ୍ଚତର ସୋପାନରେ ପ୍ରତିଷ୍ଠିତ ହୋଇ କାଳ କାଳକୁ ବଞ୍ଚି ରହିଥିବେ । ଆଗାମୀ ପିଢ଼ିର ସାରସ୍ୱତ-ସାଂସ୍କୃତିକ ଆଧ୍ୟାତ୍ମିକ ସାଧକମାନଙ୍କ ପାଇଁ ପ୍ରେରଣାର ଅସରନ୍ତି ଉତ୍ସ ହୋଇ ରହିଥିବେ । ମରଣଜୟୀ ସେ, କାଳଜୟୀ । କାଳଜୟୀ ତାଙ୍କର ସାହିତ୍ୟ, କାଳଜୟୀ ତାଙ୍କର ସଙ୍ଗୀତ । କାଳର ମସ୍ତକରେ ପାଦ ଦେଇ କାଳାତୀତ ହୋଇଛନ୍ତି ନୀଳମାଧବ ।

---

# ଦ୍ୱିତୀୟ ଅଧ୍ୟାୟ

## ସମ୍ବଲପୁରୀ ଭାଷା ଓ ସାହିତ୍ୟକୁ ନୀଳମାଧବ ପାଣିଗ୍ରାହୀଙ୍କ ଦାନ

ସମ୍ବଲପୁରୀ ଏକ ସ୍ୱତନ୍ତ୍ର ଓ ସ୍ୱୟଂସମ୍ପୂର୍ଣ୍ଣ ଭାଷା । ଏହି ଭାଷାର ଆକର୍ଷଣ ହେଉଛି ଶବ୍ଦଚାତୁରୀ, ଛନ୍ଦ ମାଧୁରୀ ଓ ସୁରଲହରୀ । ସମ୍ବଲପୁରୀ ଭାଷା ଓ ସାହିତ୍ୟର ମାଦକତା କାହାକୁ ବା ବିମୋହିତ ଅଥବା ଆକର୍ଷଣ କରି ନାହିଁ ? କିଏ ଏପରି ବ୍ୟକ୍ତି ଅଛି ଯେ, ସମ୍ବଲପୁରୀ ଭାଷା ଓ ସାହିତ୍ୟକୁ ଛାଡ଼ି ଜୀବନ ନିର୍ବାହ କରିପାରିବ । ସମ୍ବଲପୁରୀ ଭାଷାରେ ଆଜି ରାମାୟଣ, ମହାଭାରତ, ବ୍ୟାକରଣ, ଅଭିଧାନ ପ୍ରଭୃତି ଗ୍ରନ୍ଥ ରଚିତ ହୋଇ ବହୁଭାବରେ ପଠିତ ଓ ଆଲୋଚିତ ହେଉଛି – ଏହା କ'ଣ କମ୍ ଗୌରବର କଥା । ସମ୍ବଲପୁରୀ ଭାଷା ଓ ସାହିତ୍ୟର ଲେଖକମାନଙ୍କ ଗଭୀର ନିଷ୍ଠା ଯୋଗୁଁ ସମ୍ବଲପୁରୀ ସାହିତ୍ୟ ଆଜି ପରିମାର୍ଜିତ ହୋଇ ପ୍ରଗତି ପଥରେ ଅଗ୍ରସର ହେଉଛି । ଓଡ଼ିଆ ସାହିତ୍ୟକୁ ସମ୍ବଲପୁରୀ ଭାଷାର ଲେଖକ-ଲେଖିକା ମାନଙ୍କ ଦାନ ହେଉଛି ଅତୁଳନୀୟ ଓ ଅବର୍ଣ୍ଣନୀୟ ।

ନୀଳମାଧବ ପାଣିଗ୍ରାହୀ – ଉଭୟ ଓଡ଼ିଆ ଓ ସମ୍ବଲପୁରୀ ଭାଷା ସାହିତ୍ୟର ଜଣେ ସ୍ୱନାମଧନ୍ୟ ଲେଖକ । ସମ୍ବଲପୁରୀ ଭାଷା ଓ ସାହିତ୍ୟର ପ୍ରଚାର, ପ୍ରସାର ଦିଗରେ ନିଜର ଜୀବନକୁ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରି ଦେଇଥିଲେ । ନୀଳମାଧବ ପାଣିଗ୍ରାହୀଙ୍କ ବଳିଷ୍ଠ ସମ୍ପାଦନାରେ ସମ୍ବଲପୁରରୁ 'ନିସାନ୍' ନାମରେ ଖଣ୍ଡେ ମାସିକ ସମ୍ବଲପୁରୀ ଭାଷାର ସାହିତ୍ୟ ପତ୍ରିକା ୧୯୯୦ ମସିହା ଶୀତଳଷଷ୍ଠୀ ଦିନ ପ୍ରକାଶିତ ହୋଇଥିଲା । 'ନିସାନ୍' ପତ୍ରିକା ପ୍ରକାଶିତ ହେବାପୂର୍ବରୁ ଏହି ପତ୍ରିକାର ଶୁଭକାମନା କରି ସମ୍ବଲପୁରର ବିଶିଷ୍ଟ ସାହିତ୍ୟିକ ଡ.ଶ୍ରଦ୍ଧାକର ସୁପକାର ମହାଶୟ ଲେଖିଥିଲେ :

> ''ସମଲ୍‌ପୁରୀ ଭାଷାଥିଁ 'ନିସାନ୍' ବଲି ଗୁଟେ ମାସିକ୍ ପତ୍ରିକା ବାହାର୍ବା, ଇଟା ଖୋବ୍ ଖୁଶିର୍ କଥା । ଇଥିର୍ ସମ୍ପାଦକ୍ ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କୁ ମୁଇଁ ଇଥିର୍ ଲାଗି ବହୁତ୍ ଧନ୍ୟବାଦ୍ ଦଉଛେଁ । ସମଲ୍‌ପୁରୀ ଭାଷାକେ ଅଧିକା ଲୋକ୍‌ପ୍ରିୟ କର୍ବାର୍ ଲାଗି ସମଲ୍‌ପୁରୀ ଭାଷାଥି ଅଧିକ୍ ସାହିତ୍ୟ ସୃଷ୍ଟି ହେବାର୍ ନିହାତି ଦର୍କାର୍ । ସମଲ୍‌ପୁରୀ

ଭାଷାଥି 'ନିସାନ୍' ପତ୍ରିକା ମାସ୍‌କେ ମାସ୍ ବାହାରୁ ଆଉର୍ ଅଧିକ ଲେଖକ୍ ଲେଖିକା ଆମର୍ ଭାଷାଥି ଲେଖି ଇ ପତ୍ରିକାକେ ଭୁଷାଲ୍ କରୁନ୍, ଇଟା ମୋର୍ ଗୁଟେ ଆନ୍ତରିକ ଆଶା । ସମ୍ପାଦକ୍ ମହାଶୟଙ୍କୁ ମୋର୍ ଶୁଭେଚ୍ଛା ।''

**ଶ୍ରଦ୍ଧାକର ସୂପକାର**

ଏପ୍ରିଲ୍ ୧୧, ୧୯୯୦

'ନିସାନ୍' ପତ୍ରିକା ପ୍ରଥମବର୍ଷ ପ୍ରଥମସଂଖ୍ୟାରେ ସମ୍ପାଦକ ନୀଳମାଧବ ପାଣିଗ୍ରାହୀ 'ନିସାନ୍‌ର ଜନମ୍ ଯନ୍ତ୍ରଣା' ଶୀର୍ଷକ ସମ୍ପାଦକୀୟ ସ୍ତମ୍ଭରେ ଲେଖିଥିଲେ :

''ଆମର୍ ମାତୃଭାଷାର୍ ହିତାକାଂଖୀ ଭାବେଁ ଯେନ୍‌ମାନେ ନିସାନ୍ ଲାଗି ଶୁଭେଚ୍ଛା ପଠେଇଛନ୍ ଆର୍ ଯେନ୍ ଲେଖକ୍ ମାନ୍‌କର ଶବ୍ଦ ସମ୍ଭାରଥି ନିସାନ୍‌ର ଆଓ୍ୱାଜ୍ ସମୃଦ୍ଧି ପାଇଛେ ସେ ସମ୍‌କରଠାନେ ନିସାନ୍ ଆର୍ ତାର୍ ସଂପାଦକ କୃତଗ୍ୟ । କିନ୍ତୁ ମାତୃଭାଷାର୍ ଇ ପତ୍ରିକାକେ କେନ୍‌ସିମାଁ – କେନ୍‌ସି ଲେଖିକା କେନ୍ତା କେନ୍‌ସି ଲେଖା ନାଇଁ ପଠାଲେ ସେଟା ଚିନ୍ତାର୍ ବିଷୟ । ××× ଦେଖାଯାଉ, ନିସାନ୍‌ର ପହିଲ ସଂଖ୍ୟାତ ବାହାର୍ଲା, ଇତାର୍ ଉତୁଁ କେତେ ଜନ୍ ପାଠକ୍ ଛମସିଆ କି ବଛର୍‌କିଆ ଗହ୍‌କି ହେବାକେ ବାହାରି କରି ଚିଠି ଲେଖୁଛନ୍ । ଗହ୍‌କି ସଂଖ୍ୟା ଉପ୍ରେଁ ନିସାନ୍‌ର ପୃଷ୍ଠା ସଂଖ୍ୟା ନିର୍ଭର୍ କର୍ବା । ସଭେ ସୋର୍ ରଖିବାର୍ ଦର୍କାର୍ ଯେ ନିସାନ୍‌ର ପ୍ରକାଶକ୍ ଗୁଟେ ପୟସାଓ୍ୱାଲା ବେପାରୀ ନୁହେ, କାର୍ଖାନା ମାଲିକ୍ ନୁହେ କି ବଡ୍‌ଚାଷୀ ନୁହେ । ସେ ଗୁଟେ ନାମମାତ୍ର କଲମ୍ ଚାଷୀ । ××× ।''

''ନିସାନ୍'' ପ୍ରଥମବର୍ଷ ପ୍ରଥମ ସଂଖ୍ୟାରେ ନୀଳମାଧବଙ୍କର ''ଇତିହାସ୍‌ର ବୌଦ୍ଧତପସ୍ୱୀ ନବୀନ ବାବୁ'' ଏବଂ ''ରାୟ ରାମାନନ୍ଦ ହାୟ ହାୟ'' ଶୀର୍ଷକ ଛୋଟବଡ଼ ଦୁଇଟି ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଉଭୟ ପ୍ରବନ୍ଧରେ ବିଶଦ ଆଲୋଚନା ରହିଛି । ଓଡ଼ିଶାର ଖ୍ୟାତନାମା ଐତିହାସିକ ଡ.ନବୀନକୁମାର ସାହୁଙ୍କ ସମ୍ପର୍କରେ ସ୍ୱର୍ଗତ ଶ୍ରୀଯୁକ୍ତ ପାଣିଗ୍ରାହୀ ଉଲ୍ଲେଖ କରିଥିଲେ :

''ସଭେ ଜାନିଛନ୍ ଯେ ଆମର୍ ନବୀନ୍ ବାବୁ ଥିଲେ ଝନେ ପ୍ରବୀନ୍ ଇତିହାସ୍ ଅଧାପକ୍, ନାମୀ ବିଦ୍ୱାନ୍, ଯାର୍ ସୁନାମ୍ ଲହର୍ ଉଡ୍‌ଶାର୍ ସୀମାନା ଲହ୍‌କି କରି ବାହାରେଁ ଭି ଖେଲୁଥିଲା । ଇତିହାସ୍ ଏନ୍ତା ଗୁଟେ ବିଦ୍ୟା ଯେ ପର୍ହୁର୍ ଯେନ୍ କଥାଟା ସତ୍ ବଲି ଶପଥ୍ ନେଲା ଲେଖେଁ କହୁଥିଲା ଏସୁର୍ ସେହି କଥାକେ ଅସତ୍ ବଲି ଡିଙ୍ଗା

ପିଟିପାରେ । ଇତିହାସର୍ 'ଉଭା ଯେକ୍ଟି, ଢୁପା ସେକ୍ଟି' । ହେଥିର୍ ଲାଗି ବଡ୍ ବଡ୍ ଇତିହାସ-ଅଧ୍ୟାପକ୍ ମାନେଭି ବଡ୍ ଅଧ୍ୟାପକ୍ ବଲି ଜହ ଦେଖିନି ହୁଅନ୍; ପାୟଲ୍‌କେ, ମର୍ବାର୍ ତକ୍ ବିଦ୍ୟାର୍ଥୀ ମନୋଭାବ୍ ରଖିଥିସନ୍, ସେନ୍ତା ନଜରଥି ନିଜର୍‌ନୁ ଛୋଟ୍ ଲୋକ୍‌ଟାକେ ଭି ସମ୍ମାନ୍ ଦେଇକରି ତାର୍ କଥାକେ ବିଚାର୍ କର୍ସନ୍ । ନବୀନ୍‌ବାବୁ ଏନ୍ତା କାଟର୍ ଇତିହାସ୍-ଅଧ୍ୟାପକ ଆର୍ ଇତିହାସ୍-ବିଦ୍ୱାନ୍ ଥିଲେ ବଲି ମୋର୍ ବ୍ୟକ୍ତିଗତ୍ ଅଭିଗିଁୟତା ଅଛେ । ସେ କଥା ଇ ଲେଖାର୍ ପଛ୍ ଆଡ୍‌କେ ଦେଇକରି ତାକର୍ ସ୍ମୃତିକେ ମୋର୍‌ନୁତି ଜନାମି । ଇତିହାସ୍ ଆର୍ ଉଡ଼ିଆ ସଂସ୍କୃତି, ଉଡ୍‌ଶାଥି ଧର୍ମବିବର୍ତନର୍ ଧାରା ଆର୍ ଉଡ଼ିଆ ସାହିତ୍ୟଥି ମିଶା ନବୀନ୍ ବାବୁର୍ ବିଦ୍ୱତ୍ତା କେତେ ଥିଲା, କେତେ ଗହୀର୍ ଥିଲା ସେଟା, ନପାଉଲା କର୍ବାର୍ କାମ୍ ମୋର୍ ବାଗିର୍ ନୁନ୍ – ପୁତ୍‌ଲାର ପକ୍ଷେଁ ଅନୁଚିତ୍ ଆର୍ ଅସମ୍ଭବ; ହେଁ କାମ୍ ତାକର୍ କାଟର୍ ଇତିହାସ ବିଦ୍‌ମାନେ କରିଥିବେ କି କର୍ବେ । ମୁଇଁ କିନ୍ତୁ ଏକ୍ଟି ଜାନିଛେଁ ଯେ ଗଲା ଶହେ ସାଲ୍ ଭିତ୍ରେ ଆମର୍ ଅମର୍ କବି ଗଙ୍ଗାଧର୍ ପ୍ରମୁଖ୍ ଯେନ୍ କେତେ ଜନ୍ ସୁସନ୍ତାନ୍ ସମଲ୍‌ପୁର୍ ଆଡେଁ ଜନମ୍ ହେଇକରି ନିଜର୍ ଜନମ୍ ମାୟଟ୍ ଆର୍ ସାରା ଉଡ୍‌ଶାର ସଂସ୍କୃତିକେ ମାହାନ୍ ଦାନ୍ ଦେଇଛନ୍, ସେଥିର୍ କାଁଜେ ଜାନ୍ ଦେଇଛନ୍, ସେମାନ୍‌ଙ୍କର ଭିଲେଁ ନିଶ୍ଚେ ଠାନ୍ ପାୟବେ ନବୀନ୍ ବାବୁ ।''

(ନିସାନ୍ – ପ୍ରଥମଖଣ୍ଡ, ପୃ.୨୧)

ପରେ ଏହି ପ୍ରବନ୍ଧଟି ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସଙ୍କଳିତ ''ଡ.ନବୀନ୍‌କୁମାର ସାହୁ ସ୍ମରଣିକା'' (ତା ୨-୯-୧୯୯୦)ରେ ପ୍ରକାଶିତ ହୋଇଥିଲା । ଓଡ଼ିଶାର ଛନ୍ଦକବି ରାଧାମୋହନ ଗଡ଼ନାୟକଙ୍କୁ ଲକ୍ଷ୍ୟକରି ''କବି ପ୍ରଣାମ୍'' ଶୀର୍ଷକ ଏକ କବିତା ରଚନା କରିଥିଲେ ଓ ତାହା 'ନିସାନ୍' ପ୍ରଥମବର୍ଷ ପ୍ରଥମ ସଂଖ୍ୟାରେ ପ୍ରକାଶିତ । ''କବି ପ୍ରଣାମ୍'' କବିତାରେ କବି ନୀଳମାଧବ ଲେଖିଥିଲେ :

''ଉଡ୍‌ଶା ମାଆର୍ ବାଗ୍‌ବଗିଚାର୍
କୁଲେଁ ଅସୁମାର୍
ତୁମର୍ କାବ୍ୟ-କୃତି,
ଫୁଲ୍ ବରାବର୍ ଦଉଛେ କହର୍
ଆନୁଛେ ମନର୍ ନନ୍ଦନ ଅନୁଭୂତି ।

ଆଝିର୍ ତୁମର୍ ଜନମ୍ ବାସର୍
ଲଗ୍ଲେ ଲାଗିଛେ ଖୁସିର୍ ଆସର୍
ଭେଟ୍ ଦଉଛନ୍ କେତେ କବିଜନ୍
କବିତାର୍ ହାର୍ ମଣି କାଞ୍ଚନ୍ ଗୁଁଥି ।
ତୁମର୍‌ଲାକେ କାୟଁ ଉପ୍‌ହାର୍
ବନ୍ଧୁ ହେ ! ଦେମି ଆୟଜ ମୁଇଁ ଆର୍ ?
ମୁଇଁତ ହଇଛେଁ ସମଲ୍‌ପୁରିଆ
କାବ୍ୟ-କୁରିଆ-ତିଆର୍-କାରିଆ ଗୁତି ।
ମୋର୍ ଘରେ କାୟଁ ମିଲ୍‌ବାରେ ଭାୟ୍ !
ମନ୍ ଯାହା ଚାୟଁହଁ ସେନ୍ତା ରତନ୍ ମୁତି ?
ମୁଇଁ କବିତାର୍ ନୁହେଁ କଳାକାର୍
ଶବଦର୍ କାହୁଁ ହେମି ମାଲାକାର୍ ?
ମୋର୍ ସମ୍ଭାର୍ ତୁମର୍ ଅପାର୍
ହାର୍ଦ୍ଦିକତାର୍ ପଚାଶ୍ ସାଲର୍ ସ୍ମୃତି,
ସେତ୍‌କି କେବଲ୍ ମୋର୍ ସମ୍ବଲ୍
ଧରି ସମ୍ବଲ୍‌ପୁରନୁ ଆଇଛେଁ ଛୁଟି,
ସ୍ନେହର୍ ସିନ୍ଧୁ ହେ ମୋର୍ ବନ୍ଧୁ !
ନିଅ ହୋ ବୁନ୍ଦେ ମୋର୍ ହୃଦର୍ ନୁତି ।''
(ନିସାନ୍ – ପ୍ରଥମଖଣ୍ଡ, ପୃ.୨)

ସେହିପରି କବି ଗଡ଼ନାୟକଙ୍କ ଦୁଇଟି ଓଡ଼ିଆ କବିତା ''କେତେ ଭଲ ପାଅ'' ଏବଂ ''ବୈଶାଖ ମୁଁ''ର ସମ୍ବଲପୁରୀ ଅନୁବାଦ କରିଛନ୍ତି କବି ନୀଳମାଧବ । ସେହି ଦୁଇଟି କବିତା ମଧ୍ୟ 'ନିସାନ୍' ପ୍ରଥମ ସଂଖ୍ୟାରେ ପ୍ରକାଶିତ । 'ନିସାନ୍' – ପତ୍ରିକାରେ ସମ୍ବଲପୁରୀ ଭାଷାରେ ପ୍ରବନ୍ଧ, ସମାଲୋଚନା ଏବଂ କବିତା ଆଦି ପ୍ରକାଶିତ ହେଉଥିଲା । ଯେଉଁ ମାନଙ୍କର ଲେଖା ଏହି ପତ୍ରିକାରେ ପ୍ରକାଶିତ ହୋଇଥିଲା, ସେମାନେ ହେଲେ :

(ପ୍ରବନ୍ଧ ବିଭାଗ)

୧. ଡକ୍‌ଟ୍‌ର ଶ୍ରଦ୍ଧାକର ସୂପକାର
୨. ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା

୩. ଲାଲ୍ ରଘୁନନ୍ଦନ ସାଏ ଦେଓ
୪. ଶ୍ରୀ ସନ୍ତୋଷକୁମାର ପ୍ରଧାନ
୫. ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ
୬. ଶ୍ରୀ ନୀଳମାଧବ ପାଣିଗ୍ରାହୀ
୭. ଧନପତି ମହାପାତ୍ର
୮. ଅଧ୍ୟାପକ ଶ୍ୟାମସୁନ୍ଦର ଧର
୯. ଅଧ୍ୟାପକ ଦ୍ୱାରିକାନାଥ ନାୟକ
୧୦. ଉତ୍ପନ୍ନକୁମାର ଭୋଇ
୧୧. ଅଞ୍ଜଳି ମହାପାତ୍ର
୧୨. ପଣ୍ଡିତ ପ୍ରୟାଗଦତ୍ତ ଯୋଷୀ
୧୩. ଶ୍ରୀ କେଶବଚନ୍ଦ୍ର ମେହେର
୧୪. ଅଧ୍ୟାପକ ପ୍ରଫୁଲ୍ଲକୁମାର ତ୍ରିପାଠୀ
୧୫. ଡକ୍ଟର୍ ଅମୂଲ୍ୟକୃଷ୍ଣ ମିଶ୍ର
୧୬. ଡକ୍ଟର୍ ବିନୋଦଚନ୍ଦ୍ର ନାୟକ
୧୭. ଅଧ୍ୟାପିକା ବୀଣାପାଣି ପ୍ରଧାନ
୧୮. ଡକ୍ଟର୍ କୁଞ୍ଜବନ ପଟେଲ
୧୯. ଶ୍ରୀ ବିନୋଦ ପଶାଏତ୍
୨୦. କୁମାର ହସନ୍

(କବିତା ବିଭାଗ)

୧. କବି ରାଧାମୋହନ ଗଡ଼ନାୟକ
୨. ପ୍ରଫୁଲ୍ଲକୁମାର ତ୍ରିପାଠୀ
୩. ମଙ୍ଗଳଚରଣ ବିଶ୍ୱାଳ
୪. ଉମାଶଙ୍କର ପଣ୍ଡା
୫. ହନୁମାନ୍ ଦାସ
୬. କୁମାର୍ ହସନ୍
୭. ଡ. ବିନୋଦଚନ୍ଦ୍ର ନାୟକ
୮. ନୀଳମାଧବ ପାଣିଗ୍ରାହୀ
୯. ଦୀପକକୁମାର ପଣ୍ଡା

୧୦. ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀ
୧୧. ଶ୍ରୀମତୀ ଲୋକଜନନୀ ପଣ୍ଡା

'ନିସାନ୍' ପତ୍ରିକାର କେବଳ ପାଞ୍ଚଟି ସଂଖ୍ୟା ପ୍ରକାଶିତ ହୋଇଥିଲା । ସେଗୁଡ଼ିକ ହେଲା :

୧. ନିସାନ୍ – ପ୍ରଥମ ସଂଖ୍ୟା – ୧୯୯୦, ଶୀତଳଷଷ୍ଠୀ ସଂଖ୍ୟା
୨. ନିସାନ୍ – ଦ୍ୱିତୀୟ ସଂଖ୍ୟା – ୧୯୯୦, ରଥଦୁତିଆ ସଂଖ୍ୟା
୩. ନିସାନ୍ – ତୃତୀୟ ସଂଖ୍ୟା – ୧୯୯୦, ନୂଆଁଖାଇ ସଂଖ୍ୟା
(ଗଙ୍ଗାଧର, ଦୟାନିଧି, ସତ୍ନାରେନ୍ ସ୍ମରଣିକା)
୪. ନିସାନ୍ – ଚତୁର୍ଥ ସଂଖ୍ୟା – ୧୯୯୦, (?)
୫. ନିସାନ୍ – ପଞ୍ଚମ ସଂଖ୍ୟା – ତା ୧୪-୬-୧୯୯୧

'ନିସାନ୍' ପତ୍ରିକା ଅତି ଅଳ୍ପ ସମୟ ପାଇଁ ପ୍ରକାଶିତ ହୋଇ ସମଗ୍ର ପଶ୍ଚିମ ଓଡ଼ିଶାରେ ଚହଳ ସୃଷ୍ଟି କରି ପାରିଥିଲା । 'ନିସାନ୍' ପତ୍ରିକାର ପ୍ରକାଶନ ବନ୍ଦ ହେବାଯୋଗୁଁ ସମ୍ବଲପୁରୀ ଭାଷା ଓ ସାହିତ୍ୟର ଘୋର କ୍ଷତି ହୋଇଥିଲା । 'ନିସାନ୍' ପତ୍ରିକାର ପୁନଃ ପ୍ରକାଶନ ପାଇଁ ସାହିତ୍ୟିକ ଓ ସମ୍ପାଦକ ଡ.ନୀଳମାଧବ ପାଣିଗ୍ରାହୀଙ୍କୁ କବି ଗଙ୍ଗାଧର ଗୁରୁ ଖଣ୍ଡିଏ ପତ୍ର ଲେଖି ଅନୁରୋଧ କରିଥିଲେ । ପତ୍ରଟି ହେଲା :

ଓଁ ତତ୍‌ସତ୍

ପଦ୍ମପୁର
ତା ୫.୪.୯୯

ମାନନୀୟ ଆଜ୍ଞା ପ୍ରଣାମ୍ ।

'ନିସାନ୍' ପୁଣି ବାହାରି ପାରିଲେ ଖୁବ୍ ଭଲ ହେବ । କୁଡ଼େଝନିଆଁ ସମ୍ପାଦକ ମଣ୍ଡଳୀର ଆବଶ୍ୟକତା ନାହିଁ । ଆପଣଙ୍କ ପରି ଜଣେ ବିଜ୍ଞ ବ୍ୟକ୍ତି ହି ଯଥେଷ୍ଟ । ଭଗବାନ୍ ଆପଣଙ୍କୁ ଯଥେଷ୍ଟ ଶକ୍ତି ଦିଅନ୍ତୁ ଉକ୍ତ ଦାୟିତ୍ୱ ସମ୍ପନ୍ନ କରିବାପାଇଁ ।

ମୋର ସ୍ୱାସ୍ଥ୍ୟ ଭଲ ରହୁନାହିଁ । ଅଧିକାଂଶ ସମୟ ବିଶ୍ରାମ ନେଉଛି । ପଢ଼ାପଢ଼ି କରିବାକୁ ମଧ୍ୟ ଇଚ୍ଛା ହେଉନାହିଁ ।

କୌଣସି ପତ୍ରିକା ସମ୍ପାଦନ କରିବାର ଅଭିଜ୍ଞତା ଦକ୍ଷତା କିମ୍ବା ଧୈର୍ଯ୍ୟ ସାହସ ମୋର ନାହିଁ ।

'ନିସାନ୍' ନିୟମିତ ଭାବରେ ପ୍ରକାଶିତ ହେଉ – ଏହାହିଁ ମୋର ମତ ।

ଏ ପର୍ଯ୍ୟନ୍ତ ଉତ୍ତର ଦେଇପାରି ନଥିଲି । ତହିଁ ପାଇଁ କ୍ଷମା ଦେବେ । ଆଶାକରେଁ, ଆପଣ ସର୍ବକୁଶଳରେ ଥିବେ । ଇତି

ଆପଣଙ୍କର
ସୌଜନ୍ୟ ମୁଗ୍ଧ
. ଗଙ୍ଗାଧର ଗୁରୁ

ନୀଳମାଧବ ପାଣିଗ୍ରାହୀ ଜଣେ ଦେଶପ୍ରେମୀ ବ୍ୟକ୍ତି ଥିଲେ । ସ୍ୱତନ୍ତ୍ର କୋଶଳ ପ୍ରଦେଶ ଗଠନର ଚିନ୍ତା ଓ ଚେତନା ତାଙ୍କ ମନକୁ ଗଭୀରଭାବେ ଆନ୍ଦୋଳିତ କରିଥିଲା । ତେଣୁ ସେ ଭାବୀ କୋଶଳ ରାଜ୍ୟକୁ ସମ୍ବୋଧନ କରି ଲେଖିଥିଲେ "ବନ୍ଦେ କୋଶଳ ଜନନୀ ।" କୋଶଳ ରାଜ୍ୟ ଉପରେ ରଚିତ ଏକ ଉଚ୍ଚକୋଟୀର କବିତା ପଶ୍ଚିମ ଓଡ଼ିଶା ସମେତ ଉତ୍କଳର ସର୍ବାଞ୍ଚଳର ପାଠକମାନଙ୍କର ମନକୁ ଛୁଇଁଯାଏ । ଥରେ ପାଠକଲେ ମନ ଓ ହୃଦୟ ଏକାବେଳକେ ମୁଗ୍ଧ ବିଭୋର ହୋଇଯାଏ । ଏହାର କାବ୍ୟ-କଳ୍ପନା ଅତି ବୈଚିତ୍ର୍ୟମୟ । ଏହା ଏକ ଭାବପୂର୍ଣ୍ଣ କବିତା । ଏହି କବିତା ପାଠ କରି ସାରିବା ପରେ ଆମେ ସମ୍ବଲପୁରୀ ଭାଷାରେ ତାଙ୍କର ଅପ୍ରମିତ କବିତ୍ୱ ଥିବାର ଲକ୍ଷ୍ୟ କରୁଁ । ପାଠକ-ପାଠିକାମାନଙ୍କ ଅବଗତି ନିମନ୍ତେ ଏଠାରେ ତାହା ସମ୍ପୂର୍ଣ୍ଣ ଭାବରେ ଉଦ୍ଧୃତ ହେଲା । ଅନାଗତ କୋଶଳରାଜ୍ୟ ଯେଉଁ ଶୁଭ ବାସରରେ ଆତ୍ମ ପ୍ରକାଶ କରିବ, କୋଶଳ-ବାସୀ ଏହି କବିତାକୁ କୋଶଳର ପ୍ରାଦେଶିକ କବିତା ରୂପେ ଗ୍ରହଣ କରିବା ପାଇଁ ଦ୍ୱିଧା ପ୍ରକାଶ କରିବେ ନାହିଁ ବୋଲି ମୋର ଆଶା ।

**ବନ୍ଦେ କୋଶଳ ଜନନୀ :**

ଆଦିମକୀର୍ତ୍ତି ନିବହମହନୀଆ ହୀରକ ଜନନୀ ମହିୟା
ପାଦ ଯୁଗଲ ସୁତ ଶିର ବହନୀୟା ଜନନୀ...ଜନନୀ...ଜନନୀ
ବନ୍ଦେ କୋଶଳ ଜନନୀ !

ଭୂତଳ ସଞ୍ଚିତ ରତ୍ନ ବିଶାଲା ଘନବନ ଗୁମ୍ଫିତ ଭୂଧରମାଳା
ପ୍ରକୃତି ମନୋରମ ଚିତ୍ରଣଶାଳା ଜନନୀ...ଜନନୀ...ଜନନୀ
ବୈଭବଚୟ ପରିଶୋଭିତ ଗାତ୍ରୀ କୋଟି ତନୟ ପରିବର୍ଦ୍ଧନ ଧାତ୍ରୀ
ଜ୍ଞାନ ଧର୍ମନୟ ପୂରିତ ପାତ୍ରୀ ଜନନୀ...ଜନନୀ...ଜନନୀ

ଉତ୍କଳ କବଳିତ ବିକଳ ଶରୀରା ବ୍ୟାକୁଳ ଲୋଚନ ବିଗଳିତ ନୀରା

ଉଡ୍ରୀ ବିଷକୃତ ମୂକବଧୀରା ଜନନୀ...ଜନନୀ...ଜନନୀ
ଜାଗ୍ରତ ସନ୍ତତି ସଞ୍ଚିତ ସଲିଲା ବିକଳ ପରିହୃତ ଚେତନ ଶୀଲା
ଈପ୍‌ସିତ ନିଜ ଜନ ଶାସନ ଲୀଳା ଜନନୀ...ଜନନୀ...ଜନନୀ

ଉତ୍କଳ ଶାସନ ଶୃଙ୍ଖଳଚ୍ଛିନ୍ନା ଉତ୍କଳ ଭାଷା ସଂସ୍କୃତି ଭିନ୍ନା
ପ୍ରଗତି ପଥଶ୍ରମ ସତତସ୍ୱିନ୍ନା ଜନନୀ...ଜନନୀ...ଜନନୀ
ବନ୍ଦେ କୋଶଳ ଜନନୀ.... ।

କବି ନୀଳମାଧବ ସ୍ୱୟଂ ଏହାର ଭାବାର୍ଥ କରିଛନ୍ତି ଅତ୍ୟନ୍ତ ଚିତ୍ତ ଚମତ୍କାର ଭାବରେ ଓ ଭାଷାରେ । ତାହା କାବ୍ୟ ପାଠକ ପ୍ରାଣରେ ଗଭୀର ଆନନ୍ଦ ଦିଏ, ମୁଗ୍ଧ କରେ । ନୀଳମାଧବ ପାଣିଗ୍ରାହୀଙ୍କ ଭାଷାରେ :

" କୋସଲ୍ ଜନନୀ । ତୋର୍ ଖୋବ୍ ପୁରାତନ କୀର୍ତ୍ତିମନକର୍ ଲାଗି ତୁଇ କେଡ଼େ ମହାନ୍ ! ତୋର୍ ଭୂଇଁନୁ କେତେ ହୀରା ବାହାର୍‌ସି ! ତୋର୍ ପୋମାନେ ତୋର୍ ପାହା କୁଡ଼କ ମୁଣେ ଦେବାର୍ ଚାହି ! ତୋର୍ ଭୂଇଁ ତଲେଁ ଅଗଁଣିତ ରତନ ରହିଛେ; ଡଙ୍ଗର୍ ପର୍ବତ୍ ଆର୍ ଘନ୍‌ଘାଇ ଜଙ୍ଗଲ୍ ତୋର୍ ଭୂଇଁନ ଭରିଛେ; ପ୍ରକୃତିର୍ ଚିତ୍ରଶାଲା ଲେଖେଁ ତୋର୍ ଶୋଭା କେଡ଼େ ମନୋହର୍ ! ନାନା ଧନ୍ ସମ୍ପଦ ତୋର୍‌ନେ ଭରିଛେ; ତୁଇ ତୋର୍ କୋଟି କୋଟି ସନ୍ତାନ୍‌କେ ବଢ଼ାସୁ ଧାଈଟେ ଲେଖେଁ; (ତୋର୍ ଇନେ ନାଗାର୍ଜ୍ଜୁନ, ଇନ୍ଦ୍ରଭୂତି ଲେଖେଁ ଜ୍ଞାନୀ ଜେନ୍‌ଜ୍ଞାନ୍, ଧରମ୍ ଆର୍ ନୀତି ପ୍ରଚାର କରିଥିଲେ) ସେ ସବ୍ ତୋର୍‌ଇନେ ପୂରିଛେ ।

ହାୟ ! ହାୟ ! ତୁଇଁ ଏଭେଁ ବିକଲ୍ ହେଇକରି କାଁନ୍ଦୁଛୁ; ତୋର୍ ଆଖିର୍ ଲହ ବହି ଜାଉଛେ; କାରଣ, ତକେ ଉତ୍କଲ(ଉଡ଼ିଶା) ଦେଶର୍ ଲୁକେ କବ୍‌ଲେଇ ନଉଛନ୍ । ଉଡ୍ରୀ (ଉଡ଼ିଆଭାଷା) ତୋର୍ ପକ୍ଷେଁ ବିଷ୍ ଆୟ୍; ତକେ ବର୍‌କସି ସେ ବିଷ ପିଏଇ ଦିଆ ହେଇଛେ; ତୁଇଁ ବେଡୀ ଭୟଁରୀ ହେଇ ଜେଇଛୁ । ଉଡ଼ିଆ ଭାଷା ତୁଇ ନାଇ ବୁଝୁ, ତୋର୍ ପୁଏ ଭି ନାଇଁ ବୁଝନ୍ । ହେଁଥିର୍ ଲାଗି ସେମନେ ନିଜର ଭାଷା ଠିକ୍ ସେ କହି ଲେଖି ନାଇଁ ପାର୍‌ବାର, ସୁନ୍‌ଲେଁ ନାଇଁ ବୁଝ୍‌ବାର ।

ତୁଇ ଅଚେତ୍ ହେଇକରି ପଡ଼ିଥିଲୁ; ତୋର୍ ସନ୍ତାନ୍ ସନ୍ତତି ଇହାଦେ ଜାଗ୍ରତ୍ ହେଲେନ; ତୋର୍ ମୁହେଁ ପାୟନ୍ ଝିଁଟିକରି ତକେ ଚେତ୍ କଲେନ, ତୁଇ ଇନୁ କଟକୀ ଶାସନ୍ ହଟେଇ ଦେଇକରି ତୋର୍ ନିଜର୍

ପୋ–ଝୀମନେ ଦେଶର ଶାସନ୍ ଭାର୍ ହାତ୍‌କେ ନଉଁନ୍ ବଲି ଚାହୁଁଛୁ । ଉତ୍କଲ୍ (ଓଡ଼ିଶା)ର ଶାସନ୍ ସିଁକଲା ଛିଡ୍‌ବା, ଉଡ଼ିଆ ଭାଷା ଆର୍ ଉଡ଼ିଆ ସଁସ୍କୃତିନୁ ତୁଇ ଭିନେ ହେବୁ; ତୋର୍ ପ୍ରଗତି ଲାଗି ତୁଇ ହମିଶା କବାର୍ କରି କରି ତୋର୍ ଦିହୁଁ ଘମ୍ ଘମ୍ ଝାଲ୍ ବୁହୁଥିବା ।''

(ସୌଜନ୍ୟ : କୋଶଲ କ୍ୟାଲେଣ୍ଡର, ୨୦୧୦)

ସମ୍ବଲପୁରୀ ଭାଷାରେ ''ମହାଭାରତ'' ରଚନା କରିଥିବା ଯୋଗୁଁ ପଶ୍ଚିମ ଓଡ଼ିଶାବାସୀ ଆବାଳ–ବୃଦ୍ଧ–ବନିତା ନୀଳମାଧବଙ୍କୁ ଶ୍ରଦ୍ଧା ଓ ଭକ୍ତିରେ 'କୋଶଳବ୍ୟାସ' ଉପାଧି ଅର୍ପଣ କରିଛନ୍ତି । କୋଶଲୀ ଭାଷାରେ 'ରାମାୟଣ' ଲେଖିଥିଲେ କବି ଇନ୍ଦ୍ରମଣି ସାହୁ । 'କୋଶଳୀ ରାମାୟଣ' ଗ୍ରନ୍ଥ ଉନ୍ମୋଚିତ ଓ ଲୋକାର୍ପିତ ହୋଇଥିଲା କବି ନୀଳମାଧବ ପାଣିଗ୍ରାହୀଙ୍କ ହାତରେ । ଏ ସମ୍ପର୍କରେ ବଲାଙ୍ଗୀରରୁ ପ୍ରକାଶିତ ମାସିକ ପତ୍ରିକା 'ଝାର୍‌ମଲୀ'ର ଷଷ୍ଠବର୍ଷ ଷଷ୍ଠ ସଂଖ୍ୟା ଜୁନ୍ ୧୯୯୮ରେ ଏକ ବିଜ୍ଞାପନ ଦେଖିବାକୁ ମିଳେ । ବିଜ୍ଞାପନଟି ଥିଲା :

## କୋଶଲୀ ରାମାୟଣ ଉନ୍ମୋଚନ :

''ଗଲା ୨୦–୨୧।୫।୯୮ନ ପଦମ୍‌ପୁରେ 'ରାଜବୁଢ଼ା ସମର ଭେଟ୍‌ଘାଟ୍' ଉଛବ ଥି କୋସଲି ଭାଷାର ସରସା କବି କବିରାଜ ଶ୍ରୀ ଇନ୍ଦ୍ରମଣି ସାହୁକର କୋଶଲି ରାମାୟଣ ଆଦିକାଁଡ଼ ସରସା କୁସଲିଆ ଶ୍ରୀ ନୀଳମାଧବ ପାଣିଗ୍ରାହିକର ହାତେ ଉନ୍ମୋଚିତ ହେଲା । ଇ ଭେଟ୍‌ଘାଟ୍ ସଭାକେ କୋସଲି ଆଁଦୋଲନର ସବୁ ବଛିଆଁ ରଥିମାନେ ଉଡ଼୍‌ରା କରି କୋସଲି ଭାଷା ସାହିତ୍ୟ ଉପରେ ଘନଘାଇ ଆଲୋଚନା କରିଥିଲେ । ସାତକାଁଡ୍ ରାମାୟଣ ଲେଖୁ ଶ୍ରୀସାହୁକର କବାର୍‌କେ ଗହ ଗଛ ମହମହଥି ପରସଁସା କରି କୋସଲି ଭାସାର୍ ବାଲମିକି ବଲି ନାଁ ଉଡ଼ାଲେ ।''

କବିତାରେ ଛନ୍ଦ ନ ଥିଲେ ତାହା ପାଠକକୁ ଆକର୍ଷଣ କରେ ନାହିଁ । ସେହି ଦୃଷ୍ଟିରୁ ନୀଳମାଧବ ତାଙ୍କ କବିତାରେ ନୂତନ ନୂତନ ଛନ୍ଦର ସଫଳ ପ୍ରୟୋଗ କରି ପାରିଛନ୍ତି । ତାଙ୍କର ଛନ୍ଦର ସମ୍ମୋହିନୀ ଶକ୍ତିରେ ପାଠକ ମୋହିତ ହୋଇଯାଏ । ତେଣୁ ତାଙ୍କ କବିତାରେ ଆମେ ଦେଖୁଁ, ଅନୁଭବ କରୁଁ ଏକ ଅପୂର୍ବସ୍ୱାଦ । 'ସମ୍ବଲପୁର୍‌ର କଥା' କାବ୍ୟ ସଙ୍କଳନର 'ସଲାମ୍ ହୋ ବଳରାମ୍' କବିତାରେ ଲେଖିଛନ୍ତି :

''ଉଡ଼ିଆ ଜନ୍‌ତା ଶକ୍‌ତି ପୂଜାର୍ କଲା ଘୋର୍ ଅବ୍‌ହେଲା

ଭକ୍ତି ସାଗ୍ରେଁ ବୁଡ଼େଇ ବସ୍‌ଲା ଜାତିର୍ ସ୍ୱାଧୀନ୍ ଭେଲା ।
ଭୁଜ୍‌ନି ମୁଠାର୍ ତରୁଆଲ୍ ଛାଡ଼ି ଜପ୍‌ଲା ତୁଲ୍‌ସୀ ମାଲି
କୀର୍ତନ୍ କରି ମର୍‌ତେ ପିଟ୍‌ଲା ମୁର୍‌ଦୁଂ କସ୍‌ତାଲି ।
ବୁଲ୍‌ଲା ବାହାରେ ବୁହି ବୁହି କରି ବଂଗ୍‌ଲା ଦେଶର୍ ଖୋଲ୍
ଗାଆଁ ଗାଆଁ ଖାଲି ରାୟେଁ ରାୟେଁ କଲା ନିତେଇ ଗଉର୍ ବୋଲ୍,
ପଠାନ୍ ମୁଗଲ୍ ଦେଶ୍ କରିଦେଲେ ଗୋଲ୍
ଭକ୍ତିର୍ ଭଁଙ୍ଗ୍ ପିଇ ପିଇ ସଭେ ଥିଲେ ଯେତେବେଳେ ଭୋଲ୍ ।।"
(ସମଲ୍‌ପୁରର୍ କଥା – ୧୯୯୦, ପୃ.୧)

"କାହାକେ ଦେମି ମୁଇଁ ଭୋଟ୍ ?" କବିତାରେ କବି ପାଣିଗ୍ରାହୀ ମହାଶୟ ଲେଖିଛନ୍ତି :

"କାଁ କରି ଆର୍ ବାକ୍‌ସେଁ କାହାର୍
ମୁଇଁ ଦଉଥିମି ଭୋଟ୍ ?
ଭୋଟ୍–ନେତା ମୋର୍ କାଗ୍‌ଜୁଁ କର୍‌ବା
ଖରବ୍ ଖରବ୍ ନୋଟ୍ ।
ନାଇଁ ଦିଏଁ ମୁଇଁ ଭୋଟ୍ ।।"

× × ×

ରାବନ୍ ଯେନ୍ତା ଜାନ୍‌କୀ ମାଆଁର୍
ମନର୍ ବିଶାସ୍ ଲାଗି
ହରନ୍ ବେଲ୍‌କେ ଘଡ୍‌କର୍ ଭର୍
ଭେଷ୍ ହେଲା ବୟରାଗୀ,
ହେନ୍ତା କେତେକ୍ ଭେଖ୍‌ଧାରୀ ଚୋର୍
ମାତୃଘାତକ୍ ଦାଗୀ
ରାଜ୍‌ନୀତି–ବିର୍‌ହି–ଆଁଟ୍‌ଠାନେ ଠୋଲ୍,
ଦଲ୍ ଦଲ୍ ଏକ୍ ଯୋଟ୍,
ନାଇଁ ଦିଏଁ ମୁଇଁ ଭୋଟ୍ ।।

× × ×

ମୁଇଁ ନିଜେ କାୟେଁ ଭଲ୍‌ଟେ ଭାୟଲ୍ ଯେ ?
ନୁହେଁ ଭଲ୍ ଜାନ୍‌ବାର୍

ଭଲ୍ ହେଲେଁ ମୁଇଁ ଭଲ୍‌କେ ବାଛମି
ଭଲ୍ ହେବା ସର୍‌କାର୍
ଲୋକ୍ ଜାନି ହେସି ଲୋକ୍ ସର୍‌କାର୍ –
ମୋର୍ ଇ ଲେଖାର୍ ସାର୍
ଭଲ୍ ହେମି ମୁଇଁ ଆଘ୍‌ଲି, ଜାନ୍‌ମି
କିଏ ସତ୍ ସଚ୍ଚୋଟ୍ !
ଖଲ ଲାଗି ନୁହେ, ଦଲ ଲାଗି ନୁହେ
ଭଲ ଲାଗି ମୋର୍ ଭୋଟ୍ ।।
(ସମ୍ବଲଭୂମି : ତା ୧୫-୨-୧୯୯୮, ପୃ.୨)

ଏଭଳି ପଦର ସାରଲ୍ୟ, ଭାବର ମାଧୁରୀ ଏବଂ ନୂତନ ଛନ୍ଦର ସ୍ପନ୍ଦନ ଓ ଭାବର ଗୁମ୍ଫନରେ ପାଠକକୁ ମୁଗ୍‌ଧ ବିଭୋର କରି ପକାଏ । ସେଥିପାଇଁ ତ କବି ନୀଳମାଧବଙ୍କ କବିତା କେବଳ ସହୃଦୟ ରସିକ-ପାଠକ ନିକଟରେ ସମ୍ପୂର୍ଣ୍ଣ ନିବେଦିତା । ଏଭଳି ପଦ ବହୁବାର ପାଠ କରିବାକୁ ଇଛା ଜାତହୁଏ ।

ସମ୍ବଲପୁରୀ ଭାଷାରେ ସେ ବହୁ ଉପାଦେୟ କାବ୍ୟ-କବିତା ଲେଖିଛନ୍ତି । ସେଥିରୁ କେତେକ ମୌଳିକ ରଚନା ଏବଂ କେତେକ ଅନୂଦିତ । ତାଙ୍କର ସମ୍ବଲପୁରୀ ରଚନାବଳୀ ମଧ୍ୟରେ ଅଛି :

(୧) ସମଲ୍‌ପୁରର୍ କଥା – ୧୯୯୦
ପ୍ରକାଶକ – ସୁରଭି ପାଣିଗ୍ରାହୀ
ଇଲା ପାଣିଗ୍ରାହୀ
(୨) ମହ୍‌ରା ଆର୍ ମହୁ – ୧୯୯୦
ପ୍ରକାଶକ – ନିସାନ୍, ସମ୍ବଲପୁରୀ ସାହିତ୍ୟ ସଂସଦ ।
(୩) ମାହାଭାରତ କଥା – (ମହାପ୍ରସ୍ଥାନିକ୍ ପର୍ବ) – ୧୯୯୬.
ପ୍ରକାଶକ – ଆଭା ପାଣିଗ୍ରାହୀ
(୪) ମାହାଭାରତ କଥା – ୧୯୯୬ : ଲାର୍କବୁକ୍‌ସ, ଭୁବନେଶ୍ୱର ।
(୫) ମାହାଭାରତ କଥା – : ସମ୍ବଲପୁର, ବିଶ୍ୱବିଦ୍ୟାଳୟ ।
(ବର୍ତ୍ତମାନ ଛଅଖଣ୍ଡ ପ୍ରକାଶିତ)
(୬) ସମଲ୍‌ପୁରୀ କୋସ୍‌ଲି ବ୍ୟାକରଣ – ୨୦୦୧ :
(ଯୁଗ୍ମ ସମ୍ପାଦନାରେ ପ୍ରକାଶିତ)

ପ୍ରକାଶକ :– ସମ୍ବଲପୁର ବିଶ୍ୱବିଦ୍ୟାଳୟ ।

(୭) ପାଣିଗ୍ରାହୀ ପଦ୍ୟାବଳୀ – ୨୦୦୫
(ପ୍ରଥମଖଣ୍ଡ)

(୮) କୀଚକ୍ ବିନାଶ୍ ଆର୍ କୌରବ୍ ଦଲନ୍ – ୨୦୦୭

"ମହ୍ରା ଆର୍ ମହୁ" ଖଣ୍ଡିଏ ଉପାଦେୟ ସମାଲୋଚନା ପୁସ୍ତକ । ସମ୍ବଲପୁରୀ ଭାଷା ଓ ସାହିତ୍ୟ ସମ୍ପର୍କରେ ଏଥିରେ ମୋଟ ଅଠରଟି ପ୍ରବନ୍ଧ ସ୍ଥାନ ପାଇଛି । ପ୍ରତ୍ୟେକ ପ୍ରବନ୍ଧ ଦୀର୍ଘ ଆଲୋଚନାର ଅପେକ୍ଷା ରଖେ । ସମ୍ବଲପୁରୀ ଭାଷା ହେଉଛି ଏକ ସ୍ୱତନ୍ତ୍ର ଓ ସ୍ୱୟଂସମ୍ପୂର୍ଣ୍ଣ ଭାଷା । ଏହାର ଏକ ପ୍ରଚଣ୍ଡ ଜୀବନୀ ଶକ୍ତି ଅଛି । ସମ୍ବଲପୁରୀ ଭାଷାର ବର୍ଣ୍ଣାଢ୍ୟତା ଓ ଗଭୀର ଭାବୋଦ୍ଦୀପକତା ଅନସ୍ୱୀକାର୍ଯ୍ୟ । ସମ୍ବଲପୁରୀ ଭାଷାରେ ମଧ୍ୟ ଉନ୍ନତ ସାହିତ୍ୟ ସୃଷ୍ଟି କରାଯାଇପାରେ; ତାହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ସାହିତ୍ୟପ୍ରାଣ କବି ଖଗେଶ୍ୱର ଶେଠ, କବି ସତ୍ୟନାରାୟଣ ବହିଦାର, କବି ଇନ୍ଦ୍ରମଣି ସାହୁ, କବି ନୀଳମାଧବ ପାଣିଗ୍ରାହୀ, କବି ରାଜାରାମ ମେହେର ଓ ଆହୁରି ଅନେକ । ସମ୍ବଲପୁରୀ ଭାଷାରେ ରାମାୟଣ, ଅଭିଧାନ, ବ୍ୟାକରଣ ଲେଖା ହୋଇ ସାରିଥିଲା । ସମ୍ବଲପୁରୀ ଭାଷାରେ ମହାଭାରତର ଅଭାବ ଗଭୀର ଭାବେ ଅନୁଭୂତ ହେଉଥିଲା । ସେହି ଅଭାବ ପୂରଣ କରିବା ଉଦ୍ଦେଶ୍ୟରେ ବହୁ ଶ୍ରମ ସ୍ୱୀକାର ପୂର୍ବକ କବି ନୀଳମାଧବ ସମ୍ବଲପୁରୀ ଭାଷାରେ "ମହାଭାରତ କଥା" ରଚନା କରିଛନ୍ତି । ମାତ୍ର ତାଙ୍କ ଜୀବଦ୍ଦଶାରେ ତାହା ସମ୍ପୂର୍ଣ୍ଣ ହୋଇପାରି ନଥିଲା । "ମହାଭାରତ କଥା" ଆଦିପର୍ବର ପ୍ରଥମ ଖଣ୍ଡ ଓ ଦ୍ୱିତୀୟଖଣ୍ଡକୁ ଓଡ଼ିଶାର ମର୍ଯ୍ୟାଦାବନ୍ତ ପ୍ରକାଶନ "ଲାର୍କ ବୁକ୍ସ" ପ୍ରକାଶ କରିଥିଲେ । ବର୍ତ୍ତମାନ ସୁଦ୍ଧା ସମ୍ବଲପୁର ବିଶ୍ୱବିଦ୍ୟାଳୟ ଛଅ ଖଣ୍ଡ ପ୍ରକାଶ କରିଛନ୍ତି । ଏଭଳି ମୋଟ୍ ଆଠଖଣ୍ଡ ପ୍ରକାଶିତ ହୋଇଛି । ନୀଳମାଧବଙ୍କ ସମଗ୍ର ସମ୍ବଲପୁରୀ 'ମହାଭାରତ କଥା' ପ୍ରକାଶିତ ହେଲେ ସମ୍ବଲପୁରୀ ଭାଷା ସାହିତ୍ୟ ସମୃଦ୍ଧ ହେବ ।

ସମ୍ବଲପୁରୀ ଭାଷା ଓ ସାହିତ୍ୟକୁ ତାଙ୍କର ମହାର୍ଘଦାନ ଅବିସ୍ମରଣୀୟ । ତାଙ୍କର ସାମଗ୍ରିକ କୃତିପାଇଁ ସମଗ୍ର ଓଡ଼ିଆ ଜାତି ତାଙ୍କଠାରେ ଚିରକାଳ ଋଣୀ ହୋଇ ରହିଥିବେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

—

# ତୃତୀୟ ଅଧ୍ୟାୟ

## ନୀଳମାଧବଙ୍କ କବିତା

ନୀଳମାଧବ ପାଣିଗ୍ରାହୀ ଓଡ଼ିଆ ସାହିତ୍ୟରେ ଓଡ଼ିଆ କବି ଭାବରେ ସୁପରିଚିତ ନ ହେଲେ ବି' ଅପରିଚିତ ନୁହନ୍ତି । ବର୍ତ୍ତମାନ ସୁଦ୍ଧା ତାଙ୍କର ଅଳ୍ପ କେତୋଟି କବିତା ପ୍ରକାଶିତ ହୋଇ ଓଡ଼ିଶାର ସହୃଦୟ ପାଠକ-ପାଠିକା ମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଛି । ଛାତ୍ର ଜୀବନରୁ ହିଁ କବି ହେବାପାଇଁ ତାଙ୍କର ବାସନା ଥିଲା । ମଧ୍ୟଇଂରାଜୀ ବିଦ୍ୟାଳୟର ଛାତ୍ର ଥିବା ସମୟରେ ସେ କବିତା ଲେଖା ଆରମ୍ଭ କରିଥିଲେ । ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିବା ବେଳେ କିଶୋର କବି ନୀଳମାଧବ ବହୁ କବିତା ରଚନା କରିଥିଲେ । ମାତ୍ର ପାଣ୍ଡୁଲିପି ଅବସ୍ଥାରେ ହିଁ ସେସବୁ ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା । କିଶୋର କବି-ନୀଳମାଧବ-କବି ଡକ୍ଟର ମାୟାଧର ମାନସିଂହ, କବି ରାଧାମୋହନ ଗଡ଼ନାୟକ, ପ୍ରାବନ୍ଧିକ ଓ ଦାର୍ଶନିକ ପ୍ରଫେସର ରତ୍ନାକର ପତି, ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରଫେସର ବିପିନ-ବିହାରୀ ରାୟ, ଅଧ୍ୟାପକ ମୋହିନୀମୋହନ ସେନାପତି ଆଦି କବି ଓ କୋବିଦ ମାନଙ୍କଠାରୁ ପ୍ରେରଣା ଲାଭ କରିଥିଲେ ।

ନୀଳମାଧବ-ମୁଖ୍ୟତଃ ଜଣେ ଛନ୍ଦ କବିତାର କବି । କବିତା କହିଲେ ସେ ଜୀବନ ବୋଲି ବୁଝନ୍ତି । କବି ନୀଳମାଧବଙ୍କ କବିତା ଅରସିକ ନିକଟରେ ନିବେଦିତା ନୁହେଁ । ସେଥିପାଇଁ ତ ପ୍ରାଚୀନ ସଂସ୍କୃତ କବି ଯଥାର୍ଥରେ କହିଛନ୍ତି – "ଅରସିକେଷୁ କବିତ୍ୱ ନିବେଦନଂ ଶିରସି ମାଲିଖ ମାଲିଖ ମାଲିଖ" । ଅତଏବ କବିତା ସହିତ ତାଙ୍କର ଜୀବନ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ସତେ ଯେପରି ଧର୍ମ ଓ ଧରଣୀ, ପ୍ରଦୀପ ଓ ଶିଖା, ସାଗର ଓ ଉର୍ମି, ବୀଣା ଓ ମୂର୍ଚ୍ଛନା, ସହକାର ଓ କୋକିଳ, ଗୀତି ଓ ଛନ୍ଦ, ଗାନ ଓ ତାନ – ଏପରି ଓତଃପ୍ରୋତ, ବିଜଡ଼ିତ, ସଂଶ୍ଳିଷ୍ଟ । ଉତ୍ତମ କବିତା ପାଠକ ପ୍ରାଣରେ ଯେଭଳି ନିରନ୍ତର ଆନନ୍ଦ ପ୍ରଦାନ କରିଥାଏ, ସେଭଳି ଭାବେ ଆକର୍ଷଣ କରେ, ମୁଗ୍ଧ କରେ, ଧରାଦିଏ । ଯେଉଁ କବିର କବିତା ଯେତେ ପଠିତ, ଆଲୋଚିତ, ସେହି କବି ସେତେ ପରିମାଣରେ ଦେଶ ଓ ଜାତିର, ଭାଷା ଓ ସାହିତ୍ୟର ପୂଜ୍ୟ ଓ ନମସ୍ୟ । ସେଇଥିପାଇଁ ତ ଆମେ ଆଜି କବିବର ରାଧାନାଥ, ବ୍ୟାସକବି ଫକୀରମୋହନ, ସ୍ୱଭାବକବି

ଗଙ୍ଗାଧର ମେହେର, ଭକ୍ତକବି ମଧୁସୂଦନ, ପଲ୍ଲୀପ୍ରଭାତକବି ନନ୍ଦକିଶୋର, ପ୍ରଭୃତିଙ୍କ କବିତା ପାଠକରି ପ୍ରକୃତରେ ମୁଗ୍ଧ-ବିଭୋର ହେଉଛନ୍ତି । ସଫଳ କବି ଓ କବିତାର ମନୋଜ୍ଞ ସଂଜ୍ଞାଟିଏ ଦେଇ ଓଡ଼ିଶାର ସୁପରିଚିତ ସାହିତ୍ୟିକ ଡ.କେଶବଚନ୍ଦ୍ର ମେହେର କହିଛନ୍ତି :

> ''ଆତ୍ମ-ବିଭୋରତା କବିର ଏକ ସହଜାତ ଗୁଣ । ସୃଷ୍ଟିର ସୌନ୍ଦର୍ଯ୍ୟରେ ତାର ବୈଚିତ୍ର୍ୟରେ ସେ ନିଜକୁ ହଜାଇଦିଏ, ବିସ୍ମୟାଭିଭୂତ ହୋଇ ଅସ୍ମିତା ହରାଇବସେ । ସୃଷ୍ଟିର ସୁଷମା ତାକୁ ନବନବ ବୋଧହୁଏ । ×× ତାକୁ ସେ ରୂପଦେବାକୁ ପ୍ରୟାସ କରେ, ତାର ଲେଖନୀରେ, ତୂଳିକାରେ । ×× ହସକାନ୍ଦର ଦୋଳାରେ ସେ ଦୋଳୁଥାଏ, ଦୋହଲୁ ଥାଏ, ଆନନ୍ଦର ନଦୀରେ ପହଁରି ପହଁରି ମଝିରେ ମଝିରେ ବୁଡ଼ିଦିଏ ଭାବ ସାଗରର ଅତଳକୁ । ଅତି ଗଭୀର ପ୍ରଦେଶରେ, ଅତି ଗଭୀର ଭିତରେ ପାଏ ମଣିମୁକ୍ତା ମୁଠା ମୁଠା । ସେସବୁ ସଜାଇଦିଏ କବିତା ରୂପରେ । କବି ଓ କବିତା ପୁଣି ହୋଇଯାଆନ୍ତି ଅଭିନ୍ନ, ଏକାତ୍ମ ।''
>
> (ଉଦ୍ଧୃତ : ପ୍ରତିଭା ଓ ପ୍ରତିଭୂ – ୧୯୯୨, ପୃ. ୯୫)

କବି ପାଣିଗ୍ରାହୀ ବହୁ ସଫଳ କବିତାର ସ୍ରଷ୍ଟା । ତାଙ୍କର କବିତାଗୁଡ଼ିକରେ ପ୍ରକୃତ କବିତ୍ୱର ଉଜ୍ଜ୍ୱଳ ସ୍ୱାକ୍ଷର ଆମେ ଦେଖିବାକୁ ପାଉଁ । ଏହି କବିଜଣକ 'ସୁପର୍ଣ୍ଣ' ପରି ସ୍ୱାଧୀନ, ଅମୃତର ସନ୍ଧାନରେ ଊର୍ଦ୍ଧ୍ୱଗାମୀ ଓ ମୁକ୍ତ ଗଗନ ବିହାରୀ । 'ସୁପର୍ଣ୍ଣ' ଅର୍ଥାତ୍ 'ଗରୁଡ଼ପକ୍ଷୀ' ରମ୍ୟକ ଦ୍ୱୀପରେ ଯେପରି ବାସ କରିବାକୁ ଚାହେଁ, ଠିକ୍ ସେହିପରି କବି ନୀଳମାଧବ କର୍ମ କୋଳାହଳମୟ ଦୁନିଆଁରୁ ଅନ୍ୟ ଏକ ଦୁନିଆଁରେ ରହିବାକୁ ଚାହିଁଛନ୍ତି । ତେଣୁ ତାଙ୍କର କବିପ୍ରାଣ-ଉତ୍ସୁକ, ତତ୍ପର ଓ ସମ୍ପୂର୍ଣ୍ଣ ବିଭୋର । ହୃଦୟ ହୋଇଛି ବିସ୍ମିତ ପୁଲକିତ । ଯେଉଁ ଦୁନିଆଁରେ କି ନଥିବ ଦୁଃଖ, ଦରଜ, ବେଦନା, ଯାତନା, ଯେଉଁ ଦୁନିଆଁରେ ସେ ନିତ୍ୟ ଶୁଣିବାକୁ ପାଉଥିବେ କଳ୍ପନା-କଦମ୍ବ-କୁଂଜେ-ମୋହନ-ମୁରଲୀର-ମଧୁରସ୍ୱର, କାବ୍ୟ ଉପବନର କୁସୁମର କୋମଳ ପାଖୁଡ଼ାରେ ତାର ଅଙ୍ଗସ୍ପର୍ଶ କରିପାରୁଥିବେ, ସୁଗନ୍ଧର ମଧୁର ମାଦକତାରେ ସେ ନିଜେ ମୁଗ୍ଧ ହେଉଥିବେ; ଯେଉଁ ଦୁନିଆଁ କି 'ସାରସ୍ୱତ ରାଜ୍ୟ' ଅର୍ଥାତ୍ ସାହିତ୍ୟରାଜ୍ୟ ହୋଇଥିବ, ସେପରି ଏକ ରାଜ୍ୟର ପରିକଳ୍ପନା କରିଛନ୍ତି । ସେହି ରାଜ୍ୟରେ କେବଳ ସାରସ୍ୱତ ରତ୍ନ ପୂରି ରହିଥିବ, ଆଉ କବି ବିଭୋର ହୋଇ ସାଉଁଟିବା ପାଇଁ ଆକୁଳ ହୋଇ ଉଠୁଥିବେ । ସେପରି ଏକ ଦୁନିଆଁ ସେ ଚାହିଁଛନ୍ତି । ତେଣୁ ସେପରି ଏକ ସ୍ୱତନ୍ତ୍ର ଦୁନିଆଁରେ କବି

ବାସକରି ସ୍ୱତନ୍ତ୍ର କବିତା ରଚନା କରିଛନ୍ତି । ଜଗତର ନାନା ଭାବ-ବିଭବ, ନାନାଦୃଶ୍ୟ, ନାନା ଘଟଣା କବି ପ୍ରାଣକୁ କରିଛି ମୁଗ୍ଧ, ଚକିତ, ଭାବ ପ୍ରବାହରେ କରି ଦେଇଛି ତନ୍ମୟ, ବିଭୋର । "ଦୂର୍ଣ୍ଣିତ ତାଜ୍, ଅଦୃଶ୍ୟ ମମତାଜ୍" କବିତାକୁ କେବଳ ଓଡ଼ିଆ ସାହିତ୍ୟ କାହିଁକି, ଭାରତୀୟ ସାହିତ୍ୟ ଓ ବିଶ୍ୱସାହିତ୍ୟର ଶୋକ-ଗୀତିକା ଭଣ୍ଡାରର ଏକ ଉଜ୍ଜ୍ୱଳ ରତ୍ନ କହିଲେ ସତ୍ୟର ଅପଳାପ ହେବ ନାହିଁ କି ଅତିରଞ୍ଜନ ହେବ ନାହିଁ । ଏହି କବିତା ଯେ ବିଶ୍ୱ-ସାହିତ୍ୟର ବିପ୍ରଲମ୍ଭ ଶୃଙ୍ଗାର ରସସିକ୍ତ ଏକ ଅନବଦ୍ୟ କବିତା ଏଥିରେ ସନ୍ଦେହର ଅବକାଶ ନାହିଁ । କବି ନୀଳମାଧବ ଲେଖିଛନ୍ତି :

"ଅଭୁଲା ସେ ଆମ ପ୍ରଥମ ମିଳନ ଦୃଶ୍ୟର ଅଭିନୟ
ଯୁଗଳ ଜୀବନ ତୃଷିତ ନୟନ ଆଉ କେବେ ଦେଖି ନାହିଁ,
ସେଇ ଦୃଶ୍ୟ ଗୋ ଆଜି ପୁଣି ଦେଖି ଅନ୍ତରେ ଜାଗେ ଭୟ,
ମୋତେ ବିସ୍ମରି ସତେ ଅପ୍‌ସରୀ ହେଲ କି ସ୍ୱର୍ଗେ ଯାଇ ?

× × ×

ମୋ' ଜୀବନେ ସଖି ! ଆମରଣ ଘୋର ଅମା ଅନ୍ଧାର ନିଶି
ଘୋଟିଚି, ତଥାପି ବାହାରେ ବାହାରେ ନାଚେ ମୁଁ ପୂର୍ବପରି,
ପରିବାର, ପ୍ରିୟ ପରିଜନ ମେଳେ ଉପରେ ଉପରେ ମିଶି-
ରହିଛିଁ, ଭିତରେ ଘୋର-ଦୁଃଖର ସାଗର-ଧର୍ମ ଧରି ।

ଶୁଣିଯାଅ ସଖି ଶେଷ କଥାଟି ଉଦ୍‌ଗାରେ ମୋର ହିଆ
ଜୀବନର ଏକ ପରମ ଗୋପନ ଚରମ ସତ୍ୟବାଣୀ,
'ହୃଦୟେ ତୁମେ ଗୋ ପୂର୍ଣ୍ଣଜନନୀ ଅଧରେ କେବଳ ପ୍ରିୟା'
ତଥାପି ମିନତି କରୁଛିଁ, ଜନମେ ଜନମେ ହୃଦୟ ରାଣୀ ।"

(ପାଞ୍ଚଜନ୍ୟ-ତୃତୀୟବର୍ଷ, ୩ୟ ସଂଖ୍ୟା – ଦଶହରା ୧୯୮୨,
ପୃଷ୍ଠା-୩୨୫)

ପ୍ରିୟତମା ପତ୍ନୀଙ୍କର ପରଲୋକର ତିନିବର୍ଷ ପରେ ଅର୍ଥାତ୍ ୧୯୮୫ ମସିହାରେ କବି ପୁଣି ମନେ ପକାଇଛନ୍ତି ହୃଦୟରାଣୀ ସୁମେଧା ଦେବୀଙ୍କୁ । ଇଂରେଜକବି ଟେନିସନ୍‌ଙ୍କ ଇନ୍ ମେମୋରିମ୍ ପରି କବି ନୀଳମାଧବଙ୍କ ଶୋକ-ଗୀତିକା ମଧୁର କରୁଣ ଓ କରୁଣ ମଧୁର । କବିଙ୍କ ଭାଷାରେ :

"ତିନିବର୍ଷ ଯାଇଅଛି ବିତି,

ପୁଣି ଆଜି ଆସିଅଛି ସେଇ ଲଗ୍ନ, ମହାକାଳ ତିଥି,
ସେଇ ଶିବରାତ୍ରି,
ତୁମେ ଯେବେ ହୋଇଥିଲ ସୁଦୂରର ପୁଣ୍ୟଶୀଳଯାତ୍ରୀ ।
ମୋର ପାଞ୍ଚ ପ୍ରିୟ ପୁତ୍ର ପାଞ୍ଚ ପ୍ରିୟକନ୍ୟାଙ୍କ ଜନନୀ,
ସମସ୍ତଙ୍କ ନୟନର ମଣି !
ପୁଣ୍ୟବତି ! ମୋ' ଜୀବନ ପରମସଙ୍ଗିନୀ !
ଜୀବନ ସନ୍ଧ୍ୟାରେ ମୋର କନିଷ୍ଠା ଭଗିନି !
ଆଜିର ଏ ଶିବରାତ୍ରି ପବିତ୍ରବାସରେ,
ଉପବାସେ, ଉଦାସରେ,
ଚାଲିଗଲ ତୁମେ କାହିଁ ଏକା, ଏକା, ଏକା
ଲୁକିଦେଲ କାହିଁ, ଥରେ ଦେଉନାହିଁ ଦେଖା ।

× × ×

ଆଜି ମୋର ଆଉ କିଛି କହିବାର ନାହିଁ ।
ତିନିବର୍ଷ ଗଲା ଚାଲି, ଆଉ କେତେ କାଳ ?
କେତେ କାଳ ବୃଥା ଭାଳି ଭାଳି
ଖାଲି ଖାଲି ଏକ୍‌ଲା ଏକ୍‌ଲା ଆଉ
ତୁମ ପୁଣ୍ୟସ୍ମୃତିର ଚାରଣ-କବି ସାଜି
ରହିବିକି ମୁହିଁ ଆମରଣ ?
ଆଉ କେତେ କାଳ ମୁହିଁ ଚାଲୁଥିମି ବୃଥା ଭାଳି ଭାଳି
ଖାଲି, ଖାଲି, ଖାଲି !''

(ତୃତୀୟ ସାମ୍ବତ୍ସରିକ ସ୍ମରଣିକା-୧୯୮୫)

ଦରଦୀ କବି ନୀଳମାଧବଙ୍କ କବିତା ପାଠକ ପ୍ରାଣରେ ଗଭୀର ଭାବେ ଆବେଦନ ସୃଷ୍ଟିକରେ, ସମ୍ମୋହିତ କରେ, ମୁଗ୍ଧ କରେ । ପୁଣି ଭାବ-ସମୁଦ୍ରର କେଉଁ ଅନନ୍ତ ଗଭୀରତାକୁ ଭସାଇ ନିଏ, ତାଙ୍କର କବିତ୍ୱର କୁଆଡ଼ ଅତୁଳନୀୟ ସେହି କବିତାର ଭାବ-ଭରା ଆବେଦନ ।

''ମୃତ୍ୟୁ ହେ ! ତୁମେ ଠିକ୍ ସେଇବେଳେ !'' କବିତାରେ ମଧ୍ୟ କବି ନୀଳମାଧବ ସ୍ୱର୍ଗୀୟା ପ୍ରିୟତମା-ହୃଦୟବାସିନୀ-ପତ୍ନୀ ସୁମେଧା ଦେବୀଙ୍କୁ ସ୍ମରଣ କରିଛନ୍ତି, ମନେ ପକାଇଛନ୍ତି, ଆହୁରି କରିଛନ୍ତି ସ୍ମୃତିର ସ୍ତବାରମ୍ଭ । କବିଙ୍କ ଭାଷାରେ :

"ଆକାଶରୁ ଯେବେ ପୋଛିଯାଏ ଯେତେ କଳ୍ମଷ କଳାମେଘ,
ଶରତର ଯେବେ ଫୁଲ ଓ ଫସଲ ଆସୁଥାଏ ଫୁଟି ଫୁଟି,
ଜୀବନସିନ୍ଧୁ ସ୍ୱଚ୍ଛ ଯେବେ ହେ ରହିତ-ବ୍ୟଗ୍ରବେଗ,
ମୃତ୍ୟୁହେ ! ତୁମେ ତସ୍କର ସମ କେଉଁ ଶୂନ୍ୟରୁ ଉଠି
ଠିକ୍ ସେଇବେଳେ ଜୀବନ-ଫସଲ ସବୁ କିଆଁ ନିଅ ଲୁଟି ?

× × ×

ଯୁଗଳ ଯାତ୍ରୀ ଦିବସରାତ୍ରି ଗମି ଦୁର୍ଗମ ରାହା
ଉପଗତ ଶେଷେ ପ୍ରାନ୍ତର ଦେଶେ, ପଥର ପ୍ରାନ୍ତଭାଗେ ।
ଯୁଗ୍ମର ଫଳ ଦେଖି ଛଳ ଛଳ ନେତ୍ର ଯୁଗଳ ଯାହା
ହୁଏ, କେବେ ଥରେ ଅଧେ ବା ଅଧରେ ପ୍ରୀତିପୂତାଧର ଲାଗେ,
ମୃତ୍ୟୁ ହେ ! ସେବେ ବିଶ୍ଳେଷ ତୁମେ ଘଟାଅ କି ଘୋର ରାଗେ ?

× × ×

ମୃତ୍ୟୁ ହେ ! ତୁମେ ଠିକ୍ ସେଇ ବେଳେ ! ଶୟତାନ ତୁମେ, ପାଜି !
ଯୁଗଳ ଜୀବନ ସାର୍ଥକ ରାଜି ବ୍ୟର୍ଥ କରିଚ ଆଜି,
ବଳାକୀହନ୍ତା ! ଅନ୍ତକ ! ମୋର ସୁଖ ନୀଡ଼ ଦେଲ ଭାଜି !"

(ପାଞ୍ଚଜନ୍ୟ-ତୃତୀୟବର୍ଷ, ୨ୟ ସଂଖ୍ୟା, ପୃଷ୍ଠା-୧୯)

ଏହି ସମ୍ପୂର୍ଣ୍ଣ କବିତାଟି ପାଠ କଲେ ପାଠକର ଚକ୍ଷୁ ସ୍ୱତଃ ଅଶ୍ରୁସିକ୍ତ ହୋଇଯାଏ । ପ୍ରିୟତମା ପତ୍ନୀଙ୍କ ବିୟୋଗ କବିପ୍ରାଣେ କିଭଳି ଓ କେତେ ପରିମାଣରେ ଆଘାତ ଦେଇଛି, ସେଇ ରୂପରେଖ କିଭଳି ଧାରଣ କରିଛି, ତାହା ସ୍ପଷ୍ଟ ଭାବରେ ଅନୁମେୟ । ବିଶିଷ୍ଟ ଇଂରେଜ କବି P.B. Shelley (ପି.ବି.ଶେଲୀ – Percy Bysshe Shelley) ଯଥାର୍ଥରେ କହିଛନ୍ତି – "Our Sweetest songs are those that tell of saddest thoughts" ଅର୍ଥାତ୍ ପ୍ରକୃତରେ ଦୁଃଖଦ ଅନୁଭୂତି ହିଁ ପ୍ରାଣରେ ସୁଖ, ସୁମଧୁର ଝଙ୍କାରର ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରିଥାଏ ।

ସ୍ୱଭାବ କବି ଗଙ୍ଗାଧର ମେହେରଙ୍କୁ କବି ନୀଳମାଧବ କବିଗୁରୁ ରୂପେ ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ଅର୍ପଣ କରି "ସାବନ ପୁନି" କବିତାରେ ପ୍ରାଣର ଶ୍ରଦ୍ଧାଭକ୍ତି ଛଳ ଛଳ ଭାଷାରେ ଲେଖିଛନ୍ତି :

"ଆମ୍‌ହର୍ ଦେଶର୍ ତିହାର୍ ତୁଇଁ ପୁଇନ୍ ଶାବନ୍‌ପୁନି !
ସୁନା, ଲୁକର୍ କାନେଁ କାନେଁ
କବିର୍ ନାଆଁ ସଭୁଠାନେଁ

ଉସତ୍ ଆନଂଦ୍ ହେବେ ଦେଶର୍ ସଭେ ସୁନିସୁନି ।''
''ସୁନ ବହେନ୍ ଭାଇମାନେ ! ତମ୍‌ହର୍ କବିର୍ ନାଆଁ
ଆଘେଁ ଆଘେଁ ଅଛନ୍ ତାକର୍ ପୁଇଁନ୍ ଗଁଗା-ମାଆଁ
ପଛେଁ ଧର, ଜେଭେଁ ଧର ଜିବା ପ୍ରାନ୍‌ର ଦାହା
ତାକର୍ ନାଆଁ ଜାନିଛ, ସେ ତମ୍‌ହର ଗଁଗାଧର୍,
ଆମ୍‌ହର୍ ମିସେ, କବି ସେତ ଇ ସାରା ବିଶ୍ୱର୍ ।

× × ×

ମେହେର୍ କବିର୍ ପାହାତଳେଁ କର ହୋ ଜୁହାର୍
ଆଜର୍ ତାକର୍ ଜନମ୍ ତିଥିର୍ ମାନ ହୋ ତିହାର୍ ।''
('କୋସ୍‌ଲିକା' – ପାଣିଗ୍ରାହୀ ପଦ୍ୟାବଳୀ – ପୃଷ୍ଠା-୧୪୧)

ଓଡ଼ିଶାର ସୁପରିଚିତ ଛନ୍ଦକବି ରାଧାମୋହନ ଗଡ଼ନାୟକଙ୍କ ଷାଠିଏ ବର୍ଷ ପୂର୍ତ୍ତି ଉପଲକ୍ଷ୍ୟରେ ୧୯୭୧ ମସିହାରେ କବି ଗଡ଼ନାୟକଙ୍କୁ ଲକ୍ଷ୍ୟକରି କବି ନୀଳମାଧବ ଲେଖିଥିଲେ :

''ବାଣୀ ବୈଣିକ କବି ଗଡ଼ନାୟକ, ଅମୃତବାଣୀ ତାନେ
ଶ୍ରୁତିସୁଖଦାୟକ ଝଙ୍କୃତି ରଚିଅଛ ଉତ୍କଳ କାବ୍ୟ ବିତାନେ,
ସୁନ୍ଦର ସୁଲଳିତ ଛନ୍ଦେ
ବର୍ଣ୍ଣିଳ ବହୁବିଧ ବନ୍ଧେ
ପୂର୍ଣ୍ଣ କରିଚ କବି ବାଣୀମନ୍ଦିର ସପୁଲକ ପରମାନନ୍ଦେ ।
ଦୁର୍ଗମ କଣ୍ଟକମୟ ସାଧନ ପଥ ବରିଅଛ ଅପଥରଯାତ୍ରୀ,
କରିଅଛ ନିଜତନୁ ମାନସ ବିକ୍ଷତ ବଚନ ବିରଚି ଦିନ ରାତ୍ରୀ,
ବକ୍ଷେ କଣ୍ଟକ ଫୁଟାଇ
ବକ୍ଷର ଶୋଣିତ ଛୁଟାଇ;
ଶୋଣିମ ସୁନ୍ଦର କରି ହେ ବୁଲ୍‌ବୁଲ୍ କାବ୍ୟ ଗୁଲାବ୍ ଅଛ ଫୁଟାଇ ।''

କବି ଗଡ଼ନାୟକଙ୍କ କାବ୍ୟ ପ୍ରତିଭାକୁ କବି ନୀଳମାଧବ କେତେ ବୁଝିଛନ୍ତି, ଗଡ଼ନାୟକ କାବ୍ୟ ତଥା ଭାବ ସମ୍ପଦର ଅତଳ ଗର୍ଭକୁ କେତେ ଯାଇଛନ୍ତି, ଏହି କବିତାରୁ ତାହା ସ୍ପଷ୍ଟ ପ୍ରତିଭାତ ହୁଏ ।

—

# ଚତୁର୍ଥ ଅଧ୍ୟାୟ

## ପ୍ରାବନ୍ଧିକ ଓ ଗବେଷକ–ନୀଳମାଧବ

ନୀଳମାଧବ ପାଣିଗ୍ରାହୀ–ଖ୍ୟାତନାମା ସାହିତ୍ୟିକ ଭାବରେ ଯେପରି ନିଜର ମୌଳିକତାର ପରିଚୟ ଦେଇଛନ୍ତି, ସେହିପରି ସଫଳ ପ୍ରବନ୍ଧ ଓ ସମାଲୋଚନା ଲେଖି ସେ ଓଡ଼ିଆ ସାହିତ୍ୟରେ ହୋଇଛନ୍ତି ଯଶସ୍ୱୀ ଓ କୀର୍ତ୍ତିମାନ । ଅତଏବ ଆମେ ତାଙ୍କୁ ଜଣେ ସଫଳ ଗଦ୍ୟଶିଳ୍ପୀ ବା ଜଣେ ସଫଳ ଗଦ୍ୟକବି କହିବା ଯଥାର୍ଥ ହେବ । ପ୍ରାଚୀନ ସଂସ୍କୃତ ଆଳଙ୍କାରିକ ମାନେ ଗଦ୍ୟକୁ କବିର କଷଟି ପଥର ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରି କହିଛନ୍ତି– "ଗଦ୍ୟଂ କବିନାଂ ନିକଷାଂ ବଦନ୍ତି" । ଗଦ୍ୟ ଯଦି କବିଙ୍କ କଷଟି ହୁଏ ତେବେ ପ୍ରବନ୍ଧ ହେବ ଗଦ୍ୟର କଷଟି ।

ପ୍ରବନ୍ଧ ହେଉଛି ଏକ ସାରସ୍ୱତ କଳା । ଓଡ଼ିଆ ସାହିତ୍ୟରେ ତାଙ୍କର ପ୍ରବନ୍ଧ ସୃଷ୍ଟି ସମ୍ପୂର୍ଣ୍ଣ ନୂତନ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଲେଖନୀର ବୈଶିଷ୍ଟ୍ୟ ହେଉଛି – ଯେକୌଣସି ବିଷୟରେ କୌଣସି ପ୍ରବନ୍ଧ ଲେଖିଲା ବେଳେ ଯେତିକି ଭାବ ଓ ଭାଷା ଦରକାର ତାଙ୍କ ଲେଖନୀ କେବଳ ସେତିକିମାତ୍ର କହେ ଏବଂ ଯାହା କହେ ତାହା ସୁନ୍ଦର, ମାର୍ଜିତ, ମନୋଜ୍ଞ, ଅଭ୍ରାନ୍ତ ଓ ପ୍ରଭାବଶାଳୀ ଭାଷାରେ କହେ । ତାଙ୍କ ପ୍ରବନ୍ଧ ଓ ସମାଲୋଚନାର ଭାଷା ମନୋଜ୍ଞ ଓ ପ୍ରଭାବଶାଳୀ ହୋଇଥିବାରୁ ପାଠକ–ପାଠିକାଙ୍କ ମନରେ ସମ୍ପୃକ୍ତ ବିଷୟ ପ୍ରତି ଏକ ସ୍ୱଚ୍ଛ ଧାରଣା ସୃଷ୍ଟି କରିଥାଏ । ଓଡ଼ିଆ ସାହିତ୍ୟରେ ସେ ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ ଓ ସମାଲୋଚକ । ତେଣୁ ମୁକ୍ତ କଣ୍ଠରେ ଓଡ଼ିଆ ସାହିତ୍ୟରେ ତାଙ୍କର ପ୍ରବନ୍ଧ ଓ ସମାଲୋଚନାଗୁଡ଼ିକ ସମ୍ମାନିତ, ଗୌରବାନ୍ୱିତ ଓ ସର୍ବଜନ ସମାଦୃତ । ତାଙ୍କର ପ୍ରବନ୍ଧ ଓ ସମାଲୋଚନା ସମୂହକୁ ପାଞ୍ଚଟି ଭାଗରେ ବିଭକ୍ତ କରାଯାଇପାରେ । ନିମ୍ନରେ ସେଗୁଡ଼ିକ ହେଲା :

(୧) ସାହିତ୍ୟିକ ପ୍ରବନ୍ଧ (Literary)
(୨) ସମାଲୋଚନାତ୍ମକ ପ୍ରବନ୍ଧ (Literary Critism)
(୩) ଦାର୍ଶନିକ ପ୍ରବନ୍ଧ (Philosophical)
(୪) ସୁକ୍ତିମୂଳକ ପ୍ରବନ୍ଧ (Quotational)
(୫) ଚିନ୍ତାମୂଳକ ପ୍ରବନ୍ଧ (Relflective)

'କି ଥିଲା, କି ହେଲା ହାୟ !', 'ଭାରତୀୟ ଲୋକ ସଙ୍ଗୀତ ଓ ରାଗ ସଙ୍ଗୀତର ପ୍ରକୃତି', 'ଦୀନକୃଷ୍ଣଙ୍କ 'ଛାୟା'ଲାଗେ ପ୍ରୀତି'ର ପ୍ରକୃତ ଅର୍ଥ', 'ଓଡ଼ିଶୀ ଶାସ୍ତ୍ରୀୟ ସଙ୍ଗୀତ କି ?', 'ଓଡ଼ିଶୀ ସଙ୍ଗୀତର ସମାଲୋଚନା', 'କିଶୋର ଚନ୍ଦ୍ରାନନ୍ଦଚମ୍ପୂର ଚମ୍ପୂ ଆଖ୍ୟା କାହିଁକି ?', 'ଖାରବେଳ ଓ ଗାନ୍ଧର୍ବବେଦ', 'ଓଡ଼ିଶୀ ନୃତ୍ୟ ସମ୍ପର୍କରେ କେତେକ ଭ୍ରମାତ୍ମକ ତଥ୍ୟର ପ୍ରତିବାଦ', 'ଓଡ଼ିଶୀ ଅନୁଧ୍ୟାନ : ପର ପ୍ରଭାବର ଗ୍ରହଣ ଯୋଗ୍ୟତା', 'ଅଦ୍ୱିତୀୟ ଉମର ଖୈୟାମ୍', 'ପୂର୍ବ ଓ ପଶ୍ଚିମ ଓଡ଼ିଶା ଭାଷା ପ୍ରସଙ୍ଗ', 'ପ୍ରାବନ୍ଧିକ ଶ୍ୟାମ ସୁନ୍ଦର ରାଜଗୁରୁଙ୍କ ଛନ୍ଦୋଜିଜ୍ଞାସା' ପ୍ରଭୃତି କେତେକ ପ୍ରବନ୍ଧ ଉଚ୍ଚ ଦାର୍ଶନିକ ଚିନ୍ତନ ଓ ମନନର ପରିଚୟ ପ୍ରଦାନ କରିଥାଏ । ତାଙ୍କର ମୌଳିକ ଓ ଗବେଷଣାଧର୍ମୀ ପ୍ରବନ୍ଧଗୁଡ଼ିକ ଦାର୍ଶନିକ ଦୃଷ୍ଟିକୋଣର ପରିଚୟ ଦେବା ସଙ୍ଗେ ସଙ୍ଗେ ତାଙ୍କୁ ଜଣେ ସଫଳ ପ୍ରାବନ୍ଧିକ ଓ ଦୂରଦୃଷ୍ଟିସମ୍ପନ୍ନ ବିଶିଷ୍ଟ ଚିନ୍ତାନାୟକ ଓ ସଫଳ ପ୍ରାବନ୍ଧିକ ରୂପେ ପ୍ରତିପାଦନ କରାଇଥାଏ ।

''ଅଦ୍ୱିତୀୟ ଉମରଖୈୟାମ୍'' ପ୍ରବନ୍ଧରେ ପ୍ରାବନ୍ଧିକ ନୀଳମାଧବ ପାରସ୍ୟ ଦେଶର ମଧ୍ୟଯୁଗୀୟ କବି ଉମର ଖୈୟାମ୍‌ଙ୍କୁ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ବାଣୀଦୂତ ଭାବରେ ଉପସ୍ଥାପନ କରିଛନ୍ତି । ତାଙ୍କର ପ୍ରସିଦ୍ଧ କାବ୍ୟ ଗ୍ରନ୍ଥ ''ରୁବାଇଆତ୍''କୁ ନୀଳମାଧବ ପ୍ରେମକାବ୍ୟ ନ କହି ଦାର୍ଶନିକ କବିତା ଭାବରେ ପ୍ରତିପାଦନ କରିଛନ୍ତି । କବି ଉମର ଖୈୟାମ୍‌ଙ୍କ କାବ୍ୟ ପ୍ରତିଭା ସମ୍ପର୍କରେ ଶ୍ରୀଯୁକ୍ତ ପାଣିଗ୍ରାହୀ କହିଛନ୍ତି :

> ''ପାରସ୍ୟ ମରୁଦେଶର ମଧ୍ୟଯୁଗୀୟ ମହାତ୍ମା ଉମର୍ ଖୈୟାମ ତାଙ୍କ ରସସ୍ରାବୀ 'ରୁବେଇ' (ଚତୁଷ୍ପଦୀ କବିତା) ମାନଙ୍କ ପାଇଁ ସାହିତ୍ୟ ସଂସାରରେ ସୁବିଖ୍ୟାତ । ସେଇ ରୁବାଇ ଗୁଡ଼ିକର ଆବେଦନ ସାର୍ବଜନୀନ ଓ ସନାତନ, ମାତ୍ର ପ୍ରେମ କବିତା ଭାବରେ ନୁହେଁ । ଏକ ନିର୍ମମ, ନିୟତି ନିୟନ୍ତ୍ରିତ ସୃଷ୍ଟି ଯନ୍ତ୍ର ଭିତରକୁ ନିକ୍ଷିପ୍ତ ଏବଂ ନିଃସହାୟ ଭାବରେ ନିଷ୍ପେଷିତ, ନିପୀଡ଼ିତ ଓ ପରାହତ ମାନବର ବିଦ୍ରୋହୀ ଅନ୍ତର୍ଦାହ ସହିତ ଆନନ୍ଦ ସ୍ୱରୂପ ସୃଷ୍ଟିକର୍ତ୍ତାଙ୍କଠାରେ ଅବିଚଳିତ ଆସ୍ଥା–ଏଇ ଧରଣର ଦୋଦୁଲ୍ୟମାନ ଦ୍ୱୈତଭାବର ସ୍ୱାନୁଭୂତି–ରସାଣିତ ଅଭିବ୍ୟକ୍ତି ଉମର୍ କବିତାର ନାନ୍ୟତ୍ରଲବ୍ଧ ନିଜସ୍ୱ । ସଂକ୍ଷେପରେ କହିବାକୁ ଗଲେ ବିଶ୍ୱ ସାହିତ୍ୟରେ ଉମର୍ କବିତାର ପଟାନ୍ତର ନାହିଁ । ଉମର୍ ଯେ ବିଶ୍ୱଶ୍ରେଷ୍ଠ କବି–ଏକଥା ଏଠାରେ କୁହାଯାଉ ନାହିଁ; ମାତ୍ର ସେ ଯେଉଁ ଶ୍ରେଣୀର, ଯେଉଁ ପ୍ରକାରର ବା ଭାବଧାରାର କବିତା ରଚନା କରିଯାଇଛନ୍ତି ସେଥିରେ ସେ ଅତୁଳନୀୟ, ଅପ୍ରତିଦ୍ୱନ୍ଦ୍ୱୀ ।''

(ପାଞ୍ଚଜନ୍ୟ/ଦଶହରା – ୧୯୮୦, ପୃ. ୩୯)

ତାଙ୍କର ଗବେଷଣା ଶୈଳୀ ଅନନ୍ୟ ଓ ସ୍ୱତନ୍ତ୍ର । ଏହି ସ୍ୱତନ୍ତ୍ରତା ହିଁ ତାଙ୍କୁ ଓଡ଼ିଶାର ଗବେଷକ ମଣ୍ଡଳୀରେ ଗୋଟିଏ ସ୍ୱତନ୍ତ୍ର ଆସନରେ ପ୍ରତିଷ୍ଠିତ କରିପାରିଛି ।

ବିଦ୍ୟାର ବିକାଶ ସକାଶେ ଜ୍ଞାନର ପ୍ରକାଶ କ୍ଷେତ୍ରରେ ଉଚ୍ଚତର ଗବେଷଣାର ବିଶେଷ ଭୂମିକା ରହିଛି । ସୃଷ୍ଟି ପ୍ରତ୍ୟୟର ଯଥାର୍ଥ ମୂଲ୍ୟାୟନ କରିବା, ତାକୁ ଠିକ୍ ଭାବେ ଦେଖିବା ଓ ଦେଖାଇବାର ଅର୍ଥ ହେଉଛି ଗବେଷଣା । ଆମ ଭାଷା ଓ ସାହିତ୍ୟରେ ଉଚ୍ଚତର ଗବେଷଣା କ୍ଷେତ୍ରରେ ସେହିପରି ହାତଗଣତି କେତେଜଣ ଗବେଷକ ଆମ ଆଖି ଆଗରେ ସ୍ୱତଃ ପ୍ରତୀୟମାନ ହୁଅନ୍ତି । ସେମାନଙ୍କ ମଧ୍ୟରେ ପ୍ରମୁଖ ହେଲେ – ମନମୋହନ ଚକ୍ରବର୍ତ୍ତୀ, ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ପଦ୍ମଶ୍ରୀ ଡ.ମାୟାଧର ମାନସିଂହ, ପଦ୍ମଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ ଡ.ନଟବର ସାମନ୍ତରାୟ ଓ ଅଧ୍ୟାପକ ଶ୍ରୀ ଦେବେନ୍ଦ୍ରକୁମାର ଦାଶ । ଏହି ସତ୍ୟସନ୍ଧ ସାରସ୍ୱତ ଗବେଷକଙ୍କ ଗବେଷଣାର ଫଳ ଓଡ଼ିଆ ଜାତିକୁ କରିଛି ସମୃଦ୍ଧ । ଓଡ଼ିଆ ଗବେଷଣା କ୍ଷେତ୍ରରେ ପଣ୍ଡିତ ନୀଳମାଧବ ପାଣିଗ୍ରାହୀ ମଧ୍ୟ ଜଣେ ସାର୍ଥକ ଓ ଯଥାର୍ଥ ସତ୍ ଗବେଷକ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହୁଏ । ଶ୍ରୀଯୁକ୍ତ ପାଣିଗ୍ରାହୀ ମହାଶୟଙ୍କ ଗବେଷଣାର ଦିଗ ପ୍ରାଚୀନ ଓ ମଧ୍ୟକାଳୀନ ସାହିତ୍ୟ ପର୍ଯ୍ୟନ୍ତ ପ୍ରସାରିତ ହୋଇଛି । 'ଗବେଷଣା' ଭଳି ଏକ ପରମ ଓ ପବିତ୍ର କାର୍ଯ୍ୟକୁ ଗବେଷକ ଶ୍ରୀଯୁକ୍ତ ପାଣିଗ୍ରାହୀ ମହାଶୟ ଜୀବନର ପରମବ୍ରତ ବୋଲି ଗ୍ରହଣ କରି ନେଇଛନ୍ତି । ତାଙ୍କ ମତରେ ସତ୍ ଗବେଷଣାର ଅର୍ଥ ସତ୍ ସାଧନା । ଅର୍ଥାତ୍ ସତ୍ୟର ଆରାଧନା । ବୈଦିକ ଅଭିଧାନ 'ନିଘଣ୍ଟୁ'ରେ କବିକୁ, ସାହିତ୍ୟିକକୁ, ଗବେଷକକୁ 'ସାରସ୍ୱତ'ବୋଲି କୁହାଯାଇଛି । 'ସାରସ୍ୱତ' ଅର୍ଥ 'ସତ୍ୟଭାଷା' । ଅର୍ଥାତ୍ ସତ୍ୟଭାଷାର ଉପାସକ ହିଁ ସତ୍ ଗବେଷକ ।

ତାଙ୍କର ଗବେଷଣା ଗ୍ରନ୍ଥ ମଧ୍ୟରେ "ଭାରତୀୟ ସଙ୍ଗୀତ" (୧୯୬୫), "ଗୀତଗୋବିନ୍ଦ" (୧୯୮୨), "ମହରା ଆର୍ ମହୁ" (୧୯୯୦), "ଜ୍ୟୋତିର୍ମୟୀ" (୧୯୯୪) ପ୍ରଭୃତି ଗୋଟିଏ ଗୋଟିଏ ମୂଲ୍ୟବାନ ଗଦ୍ୟ ସଂପଦ । "ଭାରତୀୟ ସଙ୍ଗୀତ" ଗ୍ରନ୍ଥର ପାଣ୍ଡୁଲିପି ପାଠକରି କବି ଡ.ମାୟାଧର ମାନସିଂହ ନୀଳମାଧବଙ୍କ ଠାରେ ପଠାଣି ସାମନ୍ତ ଓ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କର ବିଶୁଦ୍ଧ ଜ୍ଞାନଚର୍ଚ୍ଚାର କଥା ଆଶାପୋଷଣ କରିଛନ୍ତି । ଯାହା ପରବର୍ତ୍ତୀ କାଳରେ ଡ.ମାନସିଂହଙ୍କ ଭବିଷ୍ୟତବାଣୀ ନୀଳମାଧବଙ୍କ ଜୀବନରେ ସତ୍ୟରେ ପରିଣତ ହୋଇଯାଇଛି । ପାଣିଗ୍ରାହୀଙ୍କ ଏହି ଗଦ୍ୟରଚନାଟି କବି ମାନସିଂହଙ୍କୁ ଅତ୍ୟନ୍ତ ମୁଗ୍ଧ ଓ ପ୍ରୀତ

କରିଥିଲା ଏବଂ ପୁସ୍ତକ ସମ୍ପର୍କରେ ଅଭିମତ ଦେଇ ଲେଖିଥିଲେ :

ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ 'ଭାରତୀୟ ସଙ୍ଗୀତ'ର କେତେକାଂଶ ପଢ଼ି ମୁଁ ମୁଗ୍ଧ ହୋଇଛି । ଇଦାନୀନ୍ତନ ଉତ୍କଳରେ ଶ୍ରୀପାଣିଗ୍ରାହୀ ଜ୍ଞାନ ତପସ୍ୟାର ଏକ ଅସାଧାରଣ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ନିଶା ବିଭାଗରେ ଅନ୍ନାର୍ଜନ ମାତ୍ରର ବ୍ୟବସ୍ଥା କରି ଏହି ଜ୍ଞାନ .ସାଧକ ଏକ ବୃହତ୍ ପରିବାରର ଭାର ନିଜର ଦୁର୍ବଳ ସ୍କନ୍ଧରେ ବହନ କରିବା ସାଥେ ସାଥେ ଗତ ୨୦।୨୫ବର୍ଷ ଧରି ନିରବଚ୍ଛିନ୍ନ ଭାବରେ କୌଣସି ପାର୍ଥିବ ଲାଭାଶାକୁ ଚିତ୍ତରେ ଆଦୌ ସ୍ଥାନ ନ ଦେଇ ସଙ୍ଗୀତ ବିଦ୍ୟାର ଚର୍ଚ୍ଚାରେ ଯେପରି ଲାଗି ରହିଛନ୍ତି ତାହା ଉତ୍କଳ କାହିଁକି, ଭାରତର ଯେକୌଣସି ପ୍ରାନ୍ତରେ ମଧ୍ୟ ଏକ ଅସାମାନ୍ୟଦୃଶ୍ୟ । ××

..... ଅଧିକନ୍ତୁ, ଏ ଗ୍ରନ୍ଥ ଉତ୍ତମ ଓଡ଼ିଆ ଗଦ୍ୟ–ବାଣୀର ଏକ ପୁଷ୍କଳ ଓ ମନୋଜ୍ଞ ଦୃଷ୍ଟାନ୍ତ । ବାଣୀର ଏ ପ୍ରକାର ପ୍ରାଞ୍ଜଳତା ଓ ପ୍ରସାଦଗୁଣ ଆସେ ପ୍ରକୃତ ପାଣ୍ଡିତ୍ୟରୁ । ×× ନୀଳମାଧବ ସେହି ପୁଞ୍ଜିର ଚମତ୍କାର ସଦ୍‌ବ୍ୟବହାର ଏହି ଗ୍ରନ୍ଥରେ ଦେଖାଇ ପାରିଛନ୍ତି ଓ ସେହି ସୂତ୍ରରେ ସମାଲୋଚନା ନାଁରେ ହୟବରଳ ଲେଖୁଥିବା ଏ ଦେଶର ବହୁ ଅଧ୍ୟାପକଙ୍କୁ ପାଣ୍ଡିତ୍ୟପୂର୍ଣ୍ଣ ରଚନା କାହାକୁ କୁହାଯାଏ ତାହା ଦେଖାଇ ଦେଇଛନ୍ତି । ××

..... ଓଡ଼ିଆଭାଷା ଏଥିପାଇଁ ତାଙ୍କ ନିକଟରେ ଚିରକାଳ ଋଣୀ ରହିବ ବୋଲି ଆଶା କରେ ।

ମାୟାଧର ମାନସିଂହ
ବରହମ୍ପୁର
୩୦।୧୧।୧୯୬୫

"ଭାରତୀୟ ସଙ୍ଗୀତ" ଗ୍ରନ୍ଥଟି ୧୯୬୫ ମସିହାରେ ପ୍ରକାଶିତ ହୋଇ ସମଗ୍ର ଓଡ଼ିଶାରେ ଚହଳ ସୃଷ୍ଟିକରି ଶ୍ରୀପାଣିଗ୍ରାହୀଙ୍କୁ ସଙ୍ଗୀତଶାସ୍ତ୍ରର ଜଣେ ଶ୍ରେଷ୍ଠ ଗବେଷକ ଭାବରେ ଆସନ ଦେଇଥିଲା । 'କଳିଙ୍ଗ'ରେ ଏହି ପୁସ୍ତକ ଉପରେ ଦୁଇଟି ଅନୁକୂଳ ସମାଲୋଚନା ଦେଖିବାକୁ ମିଳେ । ସମକାଳର ଅନ୍ୟାନ୍ୟ ପତ୍ର ପତ୍ରିକାରେ ମଧ୍ୟ ଗ୍ରନ୍ଥ ସମୀକ୍ଷା, ବିଜ୍ଞାପନ ଆଦି ପ୍ରକାଶ ପାଇଥିବା ସମ୍ଭବ ।

ଦୁଇଟି ସମାଲୋଚନା:–

(୧)

କଳିଙ୍ଗ – ଗ୍ରନ୍ଥବିଚାର
ରବିବାର, ତା ୩।୪।୬୬

''ଭାରତୀୟ ସଙ୍ଗୀତ ସମ୍ପର୍କରେ ଓଡ଼ିଆରେ ଏ ପର୍ଯ୍ୟନ୍ତ କୌଣସି ନିର୍ଭରଯୋଗ୍ୟ ପୁସ୍ତକ ନଥିଲା । ଲେଖକ ଆଲୋଚିତ ପୁସ୍ତକଟି ଲେଖି ସେ ଦିଗରେ ଏକ ଅଭାବ କେତେକାଂଶରେ ପୂର୍ଣ୍ଣ କରିଅଛନ୍ତି ।''

(୨)

ଗ୍ରନ୍ଥ ସମୀକ୍ଷା:–
କଳିଙ୍ଗ–ସୋମବାର–ତା ୨୫।୪।୬୬

''ଲେଖକଙ୍କର କର୍ମକ୍ଷେତ୍ର ସୁରା ବିଭାଗ । କିନ୍ତୁ ସୁରାର ମାଦକତାରେ ତାଙ୍କର ଦେହ ଓ ମନ ସମ୍ପୂର୍ଣ୍ଣ ରୂପେ ଆଚ୍ଛନ୍ନ । ସଙ୍ଗୀତର ମୂର୍ଚ୍ଛନାରେ ତାଙ୍କର ଶ୍ୱାସ, ପ୍ରଶ୍ୱାସ ନିୟନ୍ତ୍ରିତ ହେଲାପରି ମନେହୁଏ ।

'ଭାରତୀୟ ସଙ୍ଗୀତ' ଗ୍ରନ୍ଥଟି ଓଡ଼ିଆ ଭାଷାରେ ତାର ସ୍ୱକ୍ଷେତ୍ରରେ ଅଗ୍ରଦୂତ ସ୍ୱରୂପ । ସଙ୍ଗୀତ ବିଦ୍ୟାରେ ଶ୍ରୀ ପାଣିଗ୍ରାହୀଙ୍କ ମୌଳିକତା ଏବଂ ପାରଦର୍ଶିତା ଅନସ୍ୱୀକାର୍ଯ୍ୟ । ଓଡ଼ିଆ ଗଦ୍ୟ ଲେଖାରେ ତାଙ୍କର କୃତିତ୍ୱ ଏବଂ ଉନ୍ନତ ଶୈଳୀ ମଧ୍ୟ ପ୍ରଶଂସନୀୟ । ଆଲୋଚ୍ୟ ଗ୍ରନ୍ଥରେ କଳା, ନାଦ, ସ୍ୱର, ଶ୍ରୁତି ସମ୍ବନ୍ଧରେ ବହୁତତ୍ତ୍ୱ ଓ ତଥ୍ୟର ସମନ୍ୱୟ ସହିତ ତାଙ୍କର ବଳିଷ୍ଠ ଯୁକ୍ତି ପରିସ୍ଫୁଟ । ନାନା ଶାସ୍ତ୍ରରୁ ଉଦ୍ଧୃତ ପ୍ରମାଣ ସମୂହ ଦ୍ୱାରା ଗ୍ରନ୍ଥଟିର ଉପାଦେୟତା ଯଥେଷ୍ଟ ବୃଦ୍ଧି ପାଇଛି ।'' × ×

''ଗୀତଗୋବିନ୍ଦ'' ଆଲୋଚନା ଗ୍ରନ୍ଥରେ ଶ୍ରୀ ପାଣିଗ୍ରାହୀ ଲେଖିଛନ୍ତି :

ସଂସ୍କୃତ କାବ୍ୟର ସୁବିସ୍ତୃତ ପରିସରକୁ ଯଦି ଆକାଶ ବୋଲି କଳ୍ପନା କରାଯାଏ ତେବେ ଉତ୍କଳୀୟ କିନ୍ନରକଣ୍ଠ ମହାକବି ଜୟଦେବଙ୍କ ଗୀତଗୋବିନ୍ଦ ସେ ଆକାଶର ରାକାଶଶୀ । ଆକାଶରେ ବୃହସ୍ପତି, ସୂର୍ଯ୍ୟ ପ୍ରଭୃତିଙ୍କ ପରି ବୃହତ୍ ଗ୍ରହ–ନକ୍ଷତ୍ର–ସମାବେଶ ଭିତରେ ଚନ୍ଦ୍ର ପୃଥିବୀର ଗୋଟିଏ ଛୋଟ ଉପଗ୍ରହ, ନିଶ୍ଚୟ । ତଥାପି ତାହା ପୃଥିବୀ ପୃଷ୍ଠରେ ଶୁଭ୍ର ଶୀତଳ ଜ୍ୟୋସ୍ନାସୁଧାର ପ୍ଲାବନ ଘଟାଏ, ସମୁଦ୍ରରେ ଜୁଆର ସୃଷ୍ଟିକରେ, ଚତୁର୍ଦିଗ ଆମୋଦିତ କରେ, ତୃଷିତ ଚକୋରକୁ ତୃପ୍ତିଦାନ କରେ । ପ୍ରାୟ ସେହିପରି ଛୋଟ ଖଣ୍ଡିଏ ରଚନା 'ଗୀତଗୋବିନ୍ଦ' ପଣ୍ଡିତ ମାନଙ୍କ ଦୃଷ୍ଟିରେ ହୁଏତ 'ଖଣ୍ଡକାବ୍ୟ', ତଥାପି ସେଇ ଖଣ୍ଡକାବ୍ୟ ହିଁ ଲୋକ ଚିତ୍ତରେ ଅଲୌକିକ ଆନନ୍ଦର ଅଖଣ୍ଡ ଜୁଆର ସୃଷ୍ଟିକରେ । ହେଲେ, ବିଦଗ୍ଧ

ଚକୋରକୁ ଗୀତଗୋବିନ୍ଦ ଯେଉଁ ତୃପ୍ତିଦିଏ, ସେ ତୃପ୍ତି ସୃଷ୍ଟିକରେ ଅନନ୍ତ ତୃଷା । ବିଚିତ୍ର ଏଇ କାବ୍ୟିକ ବ୍ୟାପାର ।

ପ୍ରାୟ ସାତ ଆଠ ଶହ ବର୍ଷ ପୂର୍ବେ ସେଇ କାବ୍ୟଚନ୍ଦ୍ରମାର ଅଭ୍ୟୁଦୟ ହୋଇଥିଲା ଚଉଷଠି କଳାର ଲୀଳାଭୂମି ଆମର ଏଇ ଉତ୍କଳର ଚକ୍ରବାଳରେ । ସଂସ୍କୃତ କାବ୍ୟାକାଶରେ କ୍ରମଶଃ ଘୋଟି ଆସୁଥିବା ତମିସ୍ରାକୁ ସେଇ 'ଏକଶ୍ଚନ୍ଦ୍ର' ଗୀତଗୋବିନ୍ଦ ଯେଉଁ ପରିମାଣରେ ନିବାରଣ କରିଚି, ଉତ୍ତର କାଳୀନ ଶତଶତ କାବ୍ୟତାରା ପ୍ରତିସ୍ପର୍ଦ୍ଧା ବହନ କରି ହେଉ ଅଥବା ସେଇ ଗୀତଗୋବିନ୍ଦର ପ୍ରତିଫଳନ ପ୍ରକ୍ରିୟାର ପରିଣତି ସ୍ୱରୂପ ହେଉ ସେଇ ଆକାଶରେ ଦେଖାଦେଇ ସେ ତମିସ୍ରାର ଅଂଶମାତ୍ର ସୁଦ୍ଧା ଦୂର କରିଥିବା ମନେହୁଏ ନାହିଁ । ବରଂ, ମନେହୁଏ ତହିଁରୁ କେତେକ ସେଇ ତମିସ୍ରାଦ୍ୱାରା କବଳିତ ଓ ଅବଶିଷ୍ଟ କୃତି ଗୀତଗୋବିନ୍ଦର ପ୍ରଭାରେ ନିଷ୍ପ୍ରଭ । ଗୀତଗୋବିନ୍ଦର ଦ୍ୟୁତି ଆଗରେ ସେଗୁଡ଼ିକ ଖଦ୍ୟୋତ । ଅବଶ୍ୟ ମହାକବି ଶ୍ରୀହର୍ଷ, ମାଘ, ଭାରବୀ, ବାଣଭଟ୍ଟ, ଭବଭୂତି, କାଳିଦାସ ପ୍ରମୁଖଙ୍କ କାବ୍ୟକୃତିର ବିଭୂତି ତୁଳନାରେ କ୍ଷୁଦ୍ରାକୃତି ଗୀତଗୋବିନ୍ଦକୁ ମଧ୍ୟ କେହି କେହି ଖଦ୍ୟୋତ ଦେବାର ଆଖ୍ୟା ପକ୍ଷପାତୀ; ତଥାପି, ଏ ଖଦ୍ୟୋତଟି ତାର ସ୍ୱକୀୟ ରଜତ ଦ୍ୟୁତିରେ ଅଦ୍ୱିତୀୟ ବୋଲି ସେମାନେ ମଧ୍ୟ ସ୍ୱୀକୃତି ଦିଅନ୍ତି ।

(ଗୀତଗୋବିନ୍ଦ ୧୯୮୨, ପୃଷ୍ଠା ୧୨)

ତାଙ୍କର ପ୍ରତ୍ୟେକ ଆଲୋଚନାର ଯୁକ୍ତିଗୁଡ଼ିକ ଯଥାର୍ଥ, ମାର୍ଜିତ, ସମ୍ପୂର୍ଣ୍ଣ ମୌଳିକ – ଏକଥା ସମଗ୍ର ଓଡ଼ିଶାର ସାହିତ୍ୟିକ ମଣ୍ଡଳୀ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି । ସଂସ୍କୃତ ସାହିତ୍ୟର ବିଭିନ୍ନ ବିଭାଗକୁ ସ୍ପଷ୍ଟତର କରି ନିଜେ ଦେଖିବାରେ ଅନ୍ୟକୁ ଦେଖାଇବାରେ ତାଙ୍କର ଗବେଷଣାର ପ୍ରତିଭା ଉଜ୍ଜ୍ୱଳ ଓ ଏକାନ୍ତ ମହନୀୟ ହୋଇ ଉଠିଛି । ଓଡ଼ିଆ ସାହିତ୍ୟରେ "ଜୟଦେବ" ଓ "ଗୀତଗୋବିନ୍ଦ" ଭଳି କାବ୍ୟ ଓ କବିକୁ ଗଭୀରଭାବେ ଅଧ୍ୟୟନ କରିଥିବା, ଉତ୍ତମରୂପେ ବୁଝିଥିବା, ଜାଣିଥିବା, ତାଙ୍କ ଜୀବନୀ ଓ ସାହିତ୍ୟ ସମ୍ପର୍କରେ ଏତେ ନିର୍ଭୁଲ୍ ମତାମତ ଉପସ୍ଥାପନ କରିଥିବା, ତାଙ୍କପରି ସୁସମାଲୋଚକଟିଏ କ୍ୱଚିତ୍ ଦେଖିବାକୁ ମିଳନ୍ତି । କବି ଜୟଦେବଙ୍କୁ ଏତେ ସ୍ପଷ୍ଟଭାବରେ ନିଜେ ଚିହ୍ନିବାରେ ଓ ଅନ୍ୟକୁ ଚିହ୍ନାଇବାରେ ନୀଳମାଧବ ପାଣିଗ୍ରାହୀଙ୍କ ପରି କୌଣସି ଗବେଷକ ଏତେ କୃତକାର୍ଯ୍ୟ ହୋଇଥିବାର ମନେହୁଏ ନାହିଁ । ପଣ୍ଡିତ ଶ୍ରୀଯୁକ୍ତ ପାଣିଗ୍ରାହୀ ମୁଖ୍ୟତଃ ପ୍ରାଚୀନ ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ଜଣେ ବିଶିଷ୍ଟ ଓ ଖ୍ୟାତିସମ୍ପନ୍ନ ଗବେଷକ । ଗୀତଗୋବିନ୍ଦ ଓ କବି ଜୟଦେବଙ୍କ ଜୀବନୀ ଓ ସାହିତ୍ୟ ସମ୍ପର୍କରେ ତାଙ୍କର ମୌଳିକ ଚିନ୍ତାଗୁଡ଼ିକ

ଯେଭଳି ଆତ୍ମପ୍ରକାଶ କରିଛି, ତାହା ଆଦ୍ୟ, ଅନବଦ୍ୟ ଓ ହୃଦଭେଦ୍ୟ ଏବଂ ପ୍ରତ୍ୟେକ ସତ୍ ଗବେଷକଙ୍କ ପାଇଁ ବିଶେଷ ଲକ୍ଷ୍ୟଣୀୟ ଓ ଶିକ୍ଷଣୀୟ ମଧ୍ୟ ।

ଗବେଷକ ନୀଳମାଧବଙ୍କ ''ଗୀତଗୋବିନ୍ଦ'' ଗଦ୍ୟ ଗ୍ରନ୍ଥଟିକୁ ୧୯୮୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ରଜତଜୟନ୍ତୀ ଉପଲକ୍ଷ୍ୟରେ ପ୍ରକାଶ କରିଛନ୍ତି । ''ଗୀତଗୋବିନ୍ଦ''ର ପୁସ୍ତକ ସମୀକ୍ଷା 'ହୀରାଖଣ୍ଡ'ରେ ଯେଉଁ ପ୍ରକାଶିତ ପୁସ୍ତକ ସମୀକ୍ଷା ପ୍ରକାଶିତ ହୋଇଥିଲା, ତାହା ନିମ୍ନରେ :

ଗୀତଗୋବିନ୍ଦ

ସୂଚନାପତ୍ର, ରଜତଜୟନ୍ତୀ ଉତ୍ସବ,

୧୯୮୨, ଓଡ଼ିଶା ସାହିତ୍ୟ ଏକାଡେମୀ

ଲେଖା –

ଶ୍ରୀ ନୀଳମାଧବ ପାଣିଗ୍ରାହୀ

ଭାରତୀୟ କାବ୍ୟ ସାହିତ୍ୟରେ ଗୀତଗୋବିନ୍ଦ ଏକ ଅମଳିନ କାଳଜୟୀ ସୃଷ୍ଟି । ଭାରତୀୟ ସଂସ୍କୃତି କାବ୍ୟ ଜଗତରେ ତଥା ଭାରତୀୟ ପ୍ରାନ୍ତୀୟ ସାହିତ୍ୟରେ ଗୀତଗୋବିନ୍ଦର ପ୍ରଭାବ ଓ ସ୍ଥାନ ନିର୍ବାଚନ କରି ଏହି କାବ୍ୟକୁ ଏକ ଅଲୌକିକ ଆନନ୍ଦ ସଞ୍ଚାରୀ କାବ୍ୟ ଭାବରେ ତାର ଆତ୍ମିକ ଓ ଆଙ୍ଗୀକ ବଳଶାଳୀ କାବ୍ୟ ରୂପକୁ ସମୀକ୍ଷକ ଶ୍ରୀ ନୀଳମାଧବ ପାଣିଗ୍ରାହୀ ଏହି ପତ୍ରଟିରେ ଆଲୋଚନା କରିଛନ୍ତି । 'ଗୀତଗୋବିନ୍ଦ'ର କଳାତ୍ମକ ସୌନ୍ଦର୍ଯ୍ୟଠାରୁ ପଦ ଲାଳିତ୍ୟ, ନାଟକୀୟତା, କାବ୍ୟଗତର ସମାଧୁରୀ ଶୈଳୀଗତ ଉତ୍କର୍ଷ, ଛନ୍ଦବଦ୍ଧତା, ସାଙ୍ଗତିକ ଭାବ ଧର୍ମିତା, ଆଧ୍ୟାତ୍ମିକ ଅଭିବ୍ୟକ୍ତି ତଥା ଚାରିତ୍ରିକ ବିଶେଷତ୍ୱ ପ୍ରତିଟି ଦିଗ ପ୍ରତି ଏକ ସଚେତନ–ସହୃଦୟ ଦୃଷ୍ଟିପାତ ଦେଇ ତୁଳନାତ୍ମକ ଭଙ୍ଗୀରେ ବିଶ୍ଳେଷଣ କରିଛନ୍ତି ।

ଜୟଦେବଙ୍କ ଜୀବନୀ ଓ ତାଙ୍କର ପାରିବାରିକ ବିବରଣୀ ତଥା ଧର୍ମବାଦ ଓ କାଳ ନିରୂପଣ ବିଷୟରେ ସମୀକ୍ଷକ ବହୁ ତର୍କ–ବିତର୍କ–ପ୍ରମାଣ ମଧ୍ୟରେ ସ୍ୱକୀୟ ମତବ୍ୟକ୍ତ କରିଛନ୍ତି ।

ଓଡ଼ିଶାରେ ଗୀତଗୋବିନ୍ଦର ସାଙ୍ଗୀତିକ ପରମ୍ପରା, କାବ୍ୟିକ ଓ ଆଧ୍ୟାତ୍ମିକ ପ୍ରଭାବ ଓ ଲୋକ ଜୀବନରେ ଏଥିରେ ବର୍ଣ୍ଣିତ ରାଧାକୃଷ୍ଣଙ୍କ ଚାରିତ୍ରିକ ପ୍ରେମାଭିବ୍ୟକ୍ତିର ଊର୍ଦ୍ଧ୍ୱଗ ପ୍ରତିକ୍ରିୟାକୁ ଦର୍ଶାଯାଇଛି । କାବ୍ୟକୁ ରୀତି, ରସ ଇତ୍ୟାଦି ଆଳଙ୍କାରିକ କାଳ ଦୃଷ୍ଟିରୁ ସ୍ୱତନ୍ତ୍ର ଭାବରେ ବର୍ଣ୍ଣନା କରି ନ ଥିଲେ ମଧ୍ୟ ସୁଯୋଗକ୍ରମେ କଳାଭିବ୍ୟକ୍ତି ଭିତରେ ଯେଉଁ ପରିମାଣରେ ଦର୍ଶାଇଛନ୍ତି ସେଥି ମଧ୍ୟରେ ପାଠକ ଗୀତଗୋବିନ୍ଦର ରସଗତ ଓ ପରିବେଷଣା ଗତ ସ୍ୱରୂପ ସହିତ ପରିଚିତ ହୋଇପାରେ ।

ସମାଲୋଚନା ବିଜ୍ଞାନ ଦୃଷ୍ଟିରୁ ପାରମ୍ପରିକ ତଥା ବିଶ୍ଳେଷଣାତ୍ମକ ପ୍ରକ୍ରୀୟାରେ ସମୀକ୍ଷକ ଆଲୋଚନା ଓ ସମାଲୋଚନା କରିଛନ୍ତି । ଇଂରାଜୀ ଓ ଓଡ଼ିଆ ଭାଷାରେ ଏହା ଲିଖିତ । ଏହି ବିଶ୍ଳେଷଣାତ୍ମକ ପ୍ରବନ୍ଧର ଭାଷା ସରଳ, ଲଳିତ, ବୋଧଗମ୍ୟ ଓ ଯୁକ୍ତିସମ୍ପନ୍ନ । କଳେବର ଦୃଷ୍ଟିରୁ କ୍ଷୁଦ୍ରକାୟ ହୋଇଥିଲେ ମଧ୍ୟ ପତ୍ରଟି ବେଶ୍ ସୌନ୍ଦର୍ଯ୍ୟ ବସ୍ତୁ ଓ ସୁଭାଷିତ ହୋଇପାରିଛି । ଯଦିଓ ଗୀତଗୋବିନ୍ଦ ଭଳି ଏକ ମହାନ୍ କାବ୍ୟକୁ ଏପରି ଏକ ସଂକ୍ଷିପ୍ତ ପତ୍ରରେ ଆଲୋଚନା କରିବାକୁ ସମୀକ୍ଷକ ଚେଷ୍ଟାକରି ଅନେକ ଦିଗପ୍ରତି ପରିପୂର୍ଣ୍ଣ ଦୃଷ୍ଟି କରିପାରି ନାହାନ୍ତି ତଥାପି ହୁଏତ ଗୀତଗୋବିନ୍ଦ ଉପରେ ବିରଚିତ ପତ୍ରଟି ପାଠକକୁ ଗୀତଗୋବିନ୍ଦ ବିଷୟରେ ଏକ ଅନୁପମ ଚିତ୍ରଗତ ଧାରଣ ଦେଇଥାଏ ।

[ ସମୀକ୍ଷା – ସନ୍ତୋଷ ତ୍ରିପାଠୀ, ତିରୁଣା
ହୀରାଖଣ୍ଡ–ତା ୧୩.୪.୮୩ ]

ଉତ୍କଳ ସାହିତ୍ୟାକାଶର କାବ୍ୟ ଚନ୍ଦ୍ରମା ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ''ତପସ୍ୱିନୀ'' ସାହିତ୍ୟିକ ମହାକାବ୍ୟର ପ୍ରଥମ ସର୍ଗ ମଙ୍ଗଳାଚରଣରେ ବର୍ଣ୍ଣିତଥିବା ବିଷୟବସ୍ତୁକୁ ନେଇ ବହୁ ପଣ୍ଡିତ–ଆଲୋଚକ–ସମାଲୋଚକଙ୍କ ମଧ୍ୟରେ ମସୀଯୁଦ୍ଧ ଚାଲିଥିବା ବେଳେ ଓଡ଼ିଶାର ଏହି ଲବ୍ଧ–ପ୍ରତିଷ୍ଠ–ମେହେର କାବ୍ୟ ବିଶାରଦ ନୀଳମାଧବ ପାଣିଗ୍ରାହୀ ଏ ଆଲୋଚନା ସମ୍ପର୍କରେ ସ୍ପଷ୍ଟ କରି ଦେଇଛନ୍ତି ତାଙ୍କର ''ଜ୍ୟୋତିର୍ମୟୀ'' ଗଦ୍ୟ ରଚନା ଗ୍ରନ୍ଥରେ । ମଙ୍ଗଳାଚରଣରେ ବର୍ଣ୍ଣିତ ଥିବା ଦେବୀ ସରସ୍ୱତୀ ନୁହନ୍ତି ଏବଂ ଗଙ୍ଗାଧର 'ତପସ୍ୱିନୀ' ପ୍ରଥମସର୍ଗର ୧୦୩ଟି ପଦ ଲେଖିସାରି 'ମୁକୁର' ପତ୍ରିକାରେ ପ୍ରକାଶିତ ହେବାପରେ ଅବଶିଷ୍ଟ ୩୨ଟି ପଦ (ମଙ୍ଗଳାଚରଣ) ଲେଖିଛନ୍ତି । ଏ ସମସ୍ତ ବିଷୟକୁ ଗଭୀର ଯୁକ୍ତି ଓ ପ୍ରମାଣ ସହିତ ଶ୍ରୀଯୁକ୍ତ ପାଣିଗ୍ରାହୀ ମହାଶୟ ଦର୍ଶାଇଛନ୍ତି । ତାଙ୍କର ଭାଷାରେ :

''ବିଶ୍ୱାସ କରାଯାଇପାରେ ଯେ ଯେଉଁ '୨୦।୩୦ ପଙ୍କ୍ତି ନିମନ୍ତେ' ତପସ୍ୱିନୀ ଅପୂର୍ବ ରହିଥିବା କଥା ଏବଂ ବାରମ୍ବାର ଚେଷ୍ଟାକରି ସୁଦ୍ଧା ସେତକ ଲେଖି ନ ପାରୁଥିବା କଥା କବି ତାଙ୍କ ଚିଠିରେ ଉଲ୍ଲେଖ କରିଛନ୍ତି, ତାହା ହେଉଛି ବର୍ତ୍ତମାନ 'ତପସ୍ୱିନୀ'ର ମୁହଁରେ ଯୋଡ଼ା ହୋଇଥିବା ୩୨ ପଙ୍କ୍ତି ବିଶିଷ୍ଟ ମଙ୍ଗଳାଚରଣ । ଏହା ମୂଳରୁ କାବ୍ୟରେ ନଥିଲା ଏଥିରେ ତ ସନ୍ଦେହ ନାହିଁ, କାରଣ ତାହା ନଥାଇ 'ତପସ୍ୱିନୀ'ର ପ୍ରଥମାଦି କେତେସର୍ଗ 'ମୁକୁର'ରେ ପ୍ରକାଶିତ ହୋଇ ସାରିଥିଲା । ତେଣୁ କାବ୍ୟର ସମାପ୍ତି ପରେ ପୁଣି ତହିଁର ମୁହଁରେ

କେତେକ ପଙ୍‌କ୍ତି କାବ୍ୟ ଦେହରେ ଫିଟ୍ କଲାଭଳି ଭାବରେ ରଚନା କରିବା କମ୍ ଅଡୁଆ କାମ ନୁହେଁ । ସମ୍ଭବତଃ ସେଥିପାଇଁ କବି ବାରମ୍ବାର ଚେଷ୍ଟାକରି ସେତକ ରଚନା କରିପାରୁନଥିଲେ । ମଙ୍ଗଳାଚରଣ ନକରି କବି ଗଙ୍ଗାଧର କାବ୍ୟ-ଯଜ୍ଞ ଆରମ୍ଭ କରିଥିଲେ, ସେ ଯଜ୍ଞର ପୂର୍ଣ୍ଣାହୁତି ମଧ୍ୟ ପକାଇ ସାରିଥିଲେ, ଯଜ୍ଞାନଳ ନିର୍ବାପିତ ହୋଇ-. ସାରିଥିଲା । ଏବେ ପୁଣି ଥରେ ଯଜ୍ଞ ସମିଧ ସଂଗ୍ରହ କରି, ଯଜ୍ଞ-ଘୃତ ସଂଗ୍ରହକରି, ଯଜ୍ଞାନଳ ପୁଣି ପ୍ରଜ୍ଜ୍ୱଳିତ କରିବାକୁ ଯାଇ ଟିକିଏ ଅଡୁଆରେ ପଡ଼ିଥିବା ସ୍ୱାଭାବିକ ।'' (ଜ୍ୟୋତିର୍ମୟୀ : ପୃ ୪୩/୪୪)

ଓଡ଼ିଆ ଗଦ୍ୟ ସାହିତ୍ୟକୁ ପ୍ରାବନ୍ଧିକ ଓ ସମାଲୋଚକ ନୀଳମାଧବ ପାଣିଗ୍ରାହୀଙ୍କ ଦାନ ଅପୂର୍ବ, ଅଦ୍ୱିତୀୟ ଓ ଅତୁଳନୀୟ । ସେ କେବଳ ସଂଖ୍ୟା ଦୃଷ୍ଟିରୁ ଲେଖିଯାଇଛନ୍ତି, ତା'ନୁହେଁ, ବରଂ ସଫଳ ଗଦ୍ୟର ବିଭିନ୍ନ ବିଭାଗରେ ସଂଯତ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟର ସଙ୍ଗୀତ ଦିଗକୁ ଗଦ୍ୟମୟ କରିଯାଇଛନ୍ତି । ଡକ୍ଟର ପାଣିଗ୍ରାହୀ ମନ୍ମୟ ଗଦ୍ୟଶିଳ୍ପୀ । ତାଙ୍କର ପ୍ରବନ୍ଧ ସମୂହ ପାଠକଲେ ପାଠକ ମୁଗ୍ଧ-ବିଭୋର ହୋଇଯାଏ । ନୀଳମାଧବ ପାଣିଗ୍ରାହୀଙ୍କ ଗଦ୍ୟରେ ଆମେ ପାଉଁ ମାର୍ଜିତ ଓ ସଂଯତ ଭାଷା ବିନ୍ୟାସ, ମଧୁର ବାକ୍ୟ ସଂଯୋଜନ, ନୂତନ ଶବ୍ଦର ଚିତ୍ତ ଚମତ୍କାରୀ ପ୍ରୟୋଗ ତଥା ଭାଷାର ସାରଲ୍ୟ ଓ ଭାବର ମାଧୁରୀ । ଏହି ଦୃଷ୍ଟିରୁ ବିଚାର କଲେ ତାଙ୍କର ''ଭାରତୀୟ ସଙ୍ଗୀତ'', ''ଓଡ଼ିଶାରେ ଉପକୂଳିଆ ପ୍ରଦେଶ କେବେ ଓ କାହିଁକି ?'', ''ଓଡ଼ିଶା ସହିତ ସମ୍ବଲପୁର ମିଶ୍ରଣର ଅଜ୍ଞାତ ଦିଗନ୍ତ'', ''ଜ୍ୟୋତିର୍ମୟୀ'' ଏବଂ ''ମହରା ଆର୍ ମହୁ'' ପ୍ରଭୃତି ଗ୍ରନ୍ଥକୁ ଏଠାରେ ମୁଖ୍ୟତଃ ଉଦାହରଣ ସ୍ୱରୂପ ନିଆଯାଇପାରେ । ଓଡ଼ିଆ ସାହିତ୍ୟରେ ତାଙ୍କର ''ଭାରତୀୟ ସଙ୍ଗୀତ'' ଗୋଟିଏ ନୂତନ ଧରଣର ଆଲୋଚନା । ସଙ୍ଗୀତ ଶାସ୍ତ୍ର ଉପରେ ଏପରି ଆଲୋଚନା କରିଥିବା ବ୍ୟକ୍ତି ଖୁବ୍ କମ୍ ଦେଖାଯାନ୍ତି । ''ଭାରତୀୟ ସଙ୍ଗୀତ'' ଗ୍ରନ୍ଥରେ ଆମେ ଦେଖିବାକୁ ପାଉଁ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟକୁ ଯୁକ୍ତିନିଷ୍ଠ ଭାବେ ଉପସ୍ଥାପନ କରିବା ହିଁ ପଣ୍ଡିତ ପାଣିଗ୍ରାହୀଙ୍କ ସର୍ବଶ୍ରେଷ୍ଠ ଲକ୍ଷ୍ୟ । ନିଜର ମତାମତ ଯେତେ ଅପ୍ରିୟ ହୋଇଥାଉନା କାହିଁକି ଏହା ମଧ୍ୟ ସେ ନିର୍ଭୀକ ଭାବରେ ପ୍ରକାଶ କରିଛନ୍ତି ଏବଂ ଏହା ମଧ୍ୟ ତାଙ୍କ ପ୍ରବନ୍ଧ ଓ ସମାଲୋଚନାର ଏକ ବିଶେଷ ଦିଗ । ଅନ୍ୟ ଅର୍ଥରେ ସେ ସ୍ପଷ୍ଟବକ୍ତା ଓ ଅକୁତୋଭୟ ସାହିତ୍ୟିକ ।.

ନୀଳମାଧବ ପାଣିଗ୍ରାହୀଙ୍କ ପ୍ରବନ୍ଧର ଭାଷା ମନୋଜ୍ଞ ଓ ଅତ୍ୟନ୍ତ ପ୍ରଭାବଶାଳୀ । ସେ ସଙ୍ଗୀତର ଯେଉଁ ଯେଉଁ ବିଷୟରେ ପ୍ରବନ୍ଧ ଲେଖିଛନ୍ତି, ତାହା ଏପରି ରୂପ

ଧାରଣ କରିଛି ଯେ, ପାଠକର ମନରେ ସମ୍ପୃକ୍ତ ବିଷୟପ୍ରତି ସ୍ୱତଃ ଏକ ଧାରଣା ଉତ୍ପନ୍ନ ହୋଇଥାଏ । ''ମହରା ଆର୍ ମହୁ'' ପୁସ୍ତକର ପ୍ରବନ୍ଧ ଗୁଡ଼ିକ ମୁଖ୍ୟତଃ ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧ ସବୁ ସୃଷ୍ଟିକରି ଉତ୍କର୍ଷ ପ୍ରଦର୍ଶନ କରିଛନ୍ତି । ତାଙ୍କ ପ୍ରବନ୍ଧରେ ଦର୍ଶନତତ୍ତ୍ୱର ଅନୁଶୀଳନ ସହ ସାମାଜିକ ଜୀବନର ଗଭୀର ବିଶ୍ଳେଷଣ ଦେଖିବାକୁ ମିଳେ ।

ଓଡ଼ିଆ ସାହିତ୍ୟର ବିଶିଷ୍ଟ ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସମ୍ପର୍କରେ ଦୀର୍ଘ ପ୍ରବନ୍ଧ (୫୭ ପୃଷ୍ଠା ବିଶିଷ୍ଟ) ଲେଖିଛନ୍ତି । ଏହି ପ୍ରବନ୍ଧରେ ପ୍ରାବନ୍ଧିକ ରାଜଗୁରୁଙ୍କ ଛନ୍ଦ ଜିଜ୍ଞାସା ଉପରେ ବିଶଦ ଚର୍ଚ୍ଚା କରିଛନ୍ତି । ଏହି ପ୍ରବନ୍ଧଟି ଓଡ଼ିଶାର ପ୍ରତ୍ୟେକ ପାଠକ ଥରେ ପଢ଼ିବା ଉଚିତ । ତାଙ୍କ ସମ୍ପର୍କରେ ଶ୍ରୀ ପାଣିଗ୍ରାହୀ ଲେଖିଛନ୍ତି :

> ''ଯେତେଦୂର ଜଣାପଡ଼େ, ଓଡ଼ିଆ କାବ୍ୟର ଛନ୍ଦ ବିଷୟରେ ପଣ୍ଡିତ ଶ୍ୟାମସୁନ୍ଦରଙ୍କ ପୂର୍ବରୁ କେହି ତାତ୍ତ୍ୱିକ ଆଲୋଚନା କରି ନ ଥିଲେ । ଅବଶ୍ୟ ମହାକବି ଓ ମହାପଣ୍ଡିତ ଉପେନ୍ଦ୍ରଭଞ୍ଜ ନିଜ ପ୍ରଣୀତ 'ରସପଞ୍ଚକ'ରେ ଆତ୍ମ ପରିଚୟ ଦେବା ଅବସରରେ ନିଜକୁ 'କଳା ପିଙ୍ଗଳ ଶାସ୍ତ୍ରେ ଅନର୍ଗଳ' ବୋଲି ଘୋଷଣା କରିଥିବା କଥା ଆମେ ପଢ଼ିବାକୁ ପାଉଁ । ହେଲେବି, ପୂର୍ବଜ କବିମାନଙ୍କର କିମ୍ବା ନିଜର ବିଶାଳ କାବ୍ୟ ବାଙ୍ମୟରେ ପ୍ରଯୁକ୍ତ ଛନ୍ଦ ବିଷୟରେ ସେ ନିଜେ କିମ୍ବା ଅନ୍ୟ କେହି କୌଣସି ଆଲୋଚନା କରିଥିବା ଜଣାପଡ଼େ ନାହିଁ – ଅନ୍ତତଃ ବିଶୁଦ୍ଧ ଛନ୍ଦ କହିଲେ ଯାହା ବୁଝାଯିବା ଉଚିତ ସେ ବିଷୟରେ ରୀତିଯୁଗୀୟ କୌଣି ଗୀତକାର କବି କିଛି ଆଲୋଚନା କରିଥିବା ଜଣାପଡ଼େ ନାହିଁ ।''
>
> (ଉଦ୍ଧୃତ : ଅଭିନବ ଭଞ୍ଜ ଭାରତୀ – ୧୯୯୨, ପୃ.୫୩)

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗବେଷଣା ଓ ସମାଲୋଚନା କ୍ଷେତ୍ରରେ ପଣ୍ଡିତ ନୀଳମାଧବ ପାଣିଗ୍ରାହୀ ଜଣେ ବହୁମୁଖୀ ପ୍ରତିଭାଶାଳୀ ସତ୍ ଗବେଷକ ଭାବେ ଓଡ଼ିଶାର ସାହିତ୍ୟିକ ମଣ୍ଡଳୀର ଗଭୀର ଦୃଷ୍ଟି ଆକର୍ଷଣ କରି ପାରିଛନ୍ତି । 'ଖୁସ୍‌ରୋ' ଉପନାମରେ ରଚିତ ତାଙ୍କର ଅନେକ କବିତା ଓ ଗଦ୍ୟ ରଚନା ଏବଂ ଓଡ଼ିଶୀ ସଙ୍ଗୀତ ଉପରେ ବହୁ ଆଲୋଚନା ପ୍ରକାଶିତ ହୋଇଛି । କବି ଜୟଦେବଙ୍କ ସାହିତ୍ୟରେ ଉଚ୍ଚତର ଗବେଷଣା ନିମନ୍ତେ କେନ୍ଦ୍ର ସରକାରଙ୍କ ତାଙ୍କୁ ଫେଲୋସିପ୍ ପ୍ରଦାନ କରିଥିଲେ । ତାଙ୍କର ସମାଲୋଚନା ସାହିତ୍ୟରେ ଆମେ ତାଙ୍କର ପ୍ରଜ୍ଞା ଓ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ଦେଖିବାକୁ ପାଉଁ । ତାଙ୍କର ଗବେଷଣା ପ୍ରବନ୍ଧଗୁଡ଼ିକ

ଗଭୀର ଭାବେ ଅନୁଧ୍ୟାନ କଲେ ଜଣାପଡ଼େ ଯେ ସେ ଜଣେ ସଫଳ ଗଦ୍ୟଶିଳ୍ପୀ । ବହୁପାଠୀ ସଂସ୍କୃତ ପଣ୍ଡିତ ଏବଂ ଜ୍ଞାନ ତପସ୍ୱୀ । ତାଙ୍କ ସମାଲୋଚନାମୂଳକ ପ୍ରବନ୍ଧଗୁଡ଼ିକ ବହୁ ସୁଶୃଙ୍ଖଳିତ ଯୁକ୍ତି, ଉଚ୍ଚ ମାର୍ଜିତ ଚିନ୍ତାଧାରା ଏବଂ ବିଚାର ବିଶ୍ଳେଷଣର ତୀକ୍ଷ୍ଣତାରେ ସମୃଦ୍ଧ । ଏଠାରେ ତାଙ୍କର ପ୍ରକାଶିତ କେତେକ ପ୍ରବନ୍ଧାବଳୀ ସମ୍ପର୍କରେ ସୂଚନା :

୧. ଛନ୍ଦବିଚାର – (ପ୍ରବନ୍ଧ) ଶଙ୍ଖ – ପ୍ରଥମବର୍ଷ ୧୦ମ ସଂଖ୍ୟା, ୧୯୪୫

୨. କି ଥିଲା କି ହେଲା ହାୟ – (ପ୍ରବନ୍ଧ) ଶଙ୍ଖ – ପ୍ରଥମବର୍ଷ ୧୧ ଓ ୧୨ଶ ସଂଖ୍ୟା ୧୯୪୫

୩. ଶାସ୍ତ୍ରୀୟ ସଙ୍ଗୀତର ସାମାନ୍ୟ ବିଚାର – (ପ୍ରବନ୍ଧ) ଶଙ୍ଖ – ଦ୍ୱିତୀୟବର୍ଷ ଦ୍ୱିତୀୟ ସଂଖ୍ୟା ମଇ, ୧୯୪୬

୪. ଶାସ୍ତ୍ରୀୟ ସଙ୍ଗୀତର ନାଦ ଓ ଶ୍ରୁତିର ସୂଚନା – (ପ୍ରବନ୍ଧ) ଶଙ୍ଖ ଦ୍ୱିତୀୟବର୍ଷ ଚତୁର୍ଥ ସଂଖ୍ୟା, ଜୁଲାଇ ୧୯୪୬

୫. ଭାରତୀୟ ଲୋକ ସଙ୍ଗୀତ ଓ ରାଗ ସଙ୍ଗୀତର ପ୍ରକୃତି – (ପ୍ରବନ୍ଧ) ଝଙ୍କାର, ୯ମ ବର୍ଷ, ୮ମ ସଂଖ୍ୟା – ନଭେମ୍ବର ୧୯୫୭

୬. ଦୀନକୃଷ୍ଣଙ୍କ 'ଛାୟା ଲାଗେ ପ୍ରୀତି'ର ପ୍ରକୃତ ଅର୍ଥ – (ପ୍ରବନ୍ଧ) ଝଙ୍କାର, ୯ମ ବର୍ଷ, ୯ମ ସଂଖ୍ୟା – ଡିସେମ୍ବର ୧୯୫୭

୭. ବଙ୍ଗୀୟ ବୈଷ୍ଣବ କବିଙ୍କ ତଥାକଥିତ ''ସଙ୍ଗୀତସାର ସଂଗ୍ରହ'' – (ପ୍ରବନ୍ଧ) ଝଙ୍କାର, ୯ମ ବର୍ଷ, ଏକାଦଶ ସଂଖ୍ୟା – ଫେବୃୟାରୀ ୧୯୫୮

୮. ଓଡ଼ିଶୀ ଶାସ୍ତ୍ରୀୟ ସଙ୍ଗୀତ କି ? – (ପ୍ରବନ୍ଧ) ଝଙ୍କାର, ୧୦ମ ବର୍ଷ, ସପ୍ତମ ସଂଖ୍ୟା – ଅକ୍ଟୋବର ୧୯୫୮

୯. ଓଡ଼ିଶୀ ସଙ୍ଗୀତର ଆଲୋଚନା (୧) – (ପ୍ରବନ୍ଧ) ଝଙ୍କାର, ୧୦ମ ବର୍ଷ, ୧୨ଶ ସଂଖ୍ୟା – ମାର୍ଚ୍ଚ ୧୯୫୯

୧୦. 'ଓଡ଼ିଶୀ ସଙ୍ଗୀତର ଆଲୋଚନା'ର ପ୍ରତିବାଦ (୨) – (ପ୍ରବନ୍ଧ) ଝଙ୍କାର, ୧୧ଶବର୍ଷ, ତୃତୀୟ ସଂଖ୍ୟା ଜୁନ୍ ୧୯୫୯

୧୧. ଓଡ଼ିଶୀ ସଙ୍ଗୀତର ସମାଲୋଚନା – (୩) – (ପ୍ରବନ୍ଧ) ଝଙ୍କାର, ୧୧ଶବର୍ଷ, ପଞ୍ଚମ ସଂଖ୍ୟା, ଅଗଷ୍ଟ ୧୯୫୯

୧୨. ଓଡ଼ିଶୀ ସଙ୍ଗୀତର ସମାଲୋଚନା – (୪) – (ପ୍ରବନ୍ଧ) ଝଙ୍କାର, ୧୧ଶବର୍ଷ, ୭ମ ସଂଖ୍ୟା, ଅକ୍ଟୋବର ୧୯୫୯

୧୩. ଓଡ଼ିଶୀ ସଙ୍ଗୀତର ସମାଲୋଚନା – (୫) – (ପ୍ରବନ୍ଧ)

ଝଙ୍କାର, ୧୧ଶବର୍ଷ

୧୪. ଓଡ଼ିଶୀ ସଙ୍ଗୀତର ସମାଲୋଚନା – (୬) – (ପ୍ରବନ୍ଧ)
ଝଙ୍କାର, ୧୧ଶବର୍ଷ, ୧୧ଶ ସଂଖ୍ୟା, ଫେବୃୟାରୀ ୧୯୬୦

୧୫. ଇତିହାସ ଚକ୍ଷୁରେ ହିନ୍ଦୁସ୍ତାନୀ ଓ କର୍ଣ୍ଣାଟକୀ ସଙ୍ଗୀତ-ପଦ୍ଧତି – (ପ୍ରବନ୍ଧ)
ଝଙ୍କାର, ୧୨ଶବର୍ଷ, ୨ୟ ସଂଖ୍ୟା, ମଇ ୧୯୬୦

୧୬. ଓଡ଼ିଶୀ ସଙ୍ଗୀତର ସମାଲୋଚନା – (୭) – (ପ୍ରବନ୍ଧ)
ଝଙ୍କାର, ୧୨ଶବର୍ଷ, ୩ୟ ସଂଖ୍ୟା, ଜୁନ୍ ୧୯୬୦

୧୭. ସଙ୍ଗୀତସାର ଓ ସଙ୍ଗୀତ-ଦାମୋଦର – (ପ୍ରବନ୍ଧ)
ଝଙ୍କାର, ୧୩ଶବର୍ଷ, ୩ୟ ସଂଖ୍ୟା, ଜୁନ୍ ୧୯୬୧

୧୮. କିଶୋରଚନ୍ଦ୍ରାନନ ଚମ୍ପୂର ଚମ୍ପୂ ଆଖ୍ୟା କାହିଁକି ? – (ପ୍ରବନ୍ଧ)
ଝଙ୍କାର, ୧୯ଶବର୍ଷ, ୧୧ଶ ସଂଖ୍ୟା, ଫେବୃୟାରୀ ୧୯୬୮

୧୯. ଚୋଖିଚର୍ଚ୍ଚା – (ପ୍ରବନ୍ଧ)
ଝଙ୍କାର, ୨୦ଶବର୍ଷ, ପଞ୍ଚମ ସଂଖ୍ୟା, ଅଗଷ୍ଟ ୧୯୬୮

୨୦. ଗଡ଼ନାୟକଙ୍କ ବାଣୀ ବିଳାସ – (ପ୍ରବନ୍ଧ)
'ଗଡ଼ନାୟକ ଅଭିନନ୍ଦନ ଗ୍ରନ୍ଥ', ୨୫ ଅଗଷ୍ଟ ୧୯୭୧

୨୧. ଓଡ଼ିଶୀ ଅନୁଧ୍ୟାନ; ପର ପ୍ରଭାବର ଗ୍ରହଣ ଯୋଗ୍ୟତା – (ପ୍ରବନ୍ଧ)
ପାଞ୍ଚଜନ୍ୟ, ପ୍ରଥମ ବର୍ଷ, ୩ୟ ସଂଖ୍ୟା, ଏପ୍ରିଲ-ଜୁନ୍ ୧୯୮୦

୨୨. ଅଦ୍ୱିତୀୟ ଉମର ଖୈୟାମ୍ – (ପ୍ରବନ୍ଧ)
ପାଞ୍ଚଜନ୍ୟ, ପ୍ରଥମବର୍ଷ, ୩ୟ ସଂଖ୍ୟା, ଦଶହରା ୧୯୮୦

୨୩. ଓଡ଼ିଶାର ସଙ୍ଗୀତ ଶାସ୍ତ୍ର – (ପ୍ରବନ୍ଧ)
ଦିଗନ୍ତ, ଜାନୁୟାରୀ ୧୯୮୧

୨୪. ସଙ୍ଗୀତ ବିଜ୍ଞାନ ଓ ତାର କଳାତ୍ମକତାର ନାନା ଦିଗ – (ପ୍ରବନ୍ଧ)
ସପ୍ତର୍ଷି ୧୦/୨, ଫେବୃୟାରୀ ୧୯୮୧

୨୫. ଜୟଦେବ ଜୟନ୍ତୀ – (ପ୍ରବନ୍ଧ)
ପାଞ୍ଚଜନ୍ୟ, ଦ୍ୱିତୀୟବର୍ଷ, ୨ୟ ସଂଖ୍ୟା, ରଥଯାତ୍ରା ସଂଖ୍ୟା ୧୯୮୧

୨୬. ଖାରବେଳ ଓ ଗାନ୍ଧର୍ବ ବେଦ – (ପ୍ରବନ୍ଧ)
କୋଣାର୍କ ୪୮ଶ ସଂଖ୍ୟା, ୧୯୮୨

୨୭. ସଙ୍ଗୀତ ଶାସ୍ତ୍ର ଓ ସଙ୍ଗୀତ ରଚନାର ପରମ୍ପରା – (ପ୍ରବନ୍ଧ)
କୋଣାର୍କ ୫୦ତମ ସଂଖ୍ୟା, ୧୯୮୩

୨୮. ପୂର୍ବ ଓ ପଶ୍ଚିମ ଓଡ଼ିଶାର ଭାଷା ପ୍ରସଙ୍ଗ – (ପ୍ରବନ୍ଧ)
ପାଞ୍ଚଜନ୍ୟ, ଦୋଳସଂଖ୍ୟା – ୧୯୮୩

୨୯. ଶଙ୍ଖମର୍ମର ଗୁଡ଼ି ଉପରେ ପଙ୍କ ନିକ୍ଷେପ – (ପ୍ରବନ୍ଧ)
ହୀରାଖଣ୍ଡ, ତା ୨୪।୧।୧୯୮୪

୩୦. ପଦ୍ମାବତୀ, ଜୟଦେବ ଓ ଗୀତଗୋବିନ୍ଦ; ଏକ ସ୍ୱପ୍ନିଳ ସଂସ୍ମରଣ – (ପ୍ରବନ୍ଧ)
ହୀରାଖଣ୍ଡ ବସନ୍ତ ମିଳନ ସ୍ମରଣିକା, ୧୯୮୪

୩୧. ଓଡ଼ିଶୀ ନୃତ୍ୟ ସମ୍ପର୍କରେ କେତେକ ଭ୍ରମାତ୍ମକ ତଥ୍ୟର ପ୍ରତିବାଦ –(ପ୍ରବନ୍ଧ)
କୋଣାର୍କ ୫୪ଶ ସଂଖ୍ୟା, ୧୯୮୪

୩୨. ସଙ୍ଗୀତକାର ? ଭଂଜ ଅଧ୍ୟାପକଙ୍କ ଅପଧାରଣା – (ପ୍ରବନ୍ଧ)
ପାଞ୍ଚଜନ୍ୟ, ରଥସଂଖ୍ୟା – ୧୯୮୪

୩୩. ସଙ୍ଗୀତ ଓ ନୃତ୍ୟ ଗବେଷଣା – (ପ୍ରବନ୍ଧ)
ପାଞ୍ଚଜନ୍ୟ, ଜାନୁୟାରୀ – ମାର୍ଚ୍ଚ ୧୯୮୫

୩୪. ଖାଁଟି ଭାଷା ଖାଁଟି ଲେଖା – (ପ୍ରବନ୍ଧ)
ଉକିଆ – ଦ୍ୱିତୀୟବର୍ଷ ୧୯୮୫

୩୫. ଇତିହାସର୍ ବୌଦ୍ଧ ତପସ୍ୱୀ ନବୀନବାବୁ – (ସମ୍ବଲପୁରୀ ପ୍ରବନ୍ଧ)
ଡକ୍ଟର ନବୀନ କୁମାର ସାହୁ ସ୍ମରଣିକା
ସେପ୍ଟେମ୍ବର ୨, ୧୯୯୦
ପ୍ରକାଶକ:– ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

୩୬. ଶ୍ୟାମସୁନ୍ଦର ରାଜଗୁରୁଙ୍କ ଛନ୍ଦୋ ଜିଜ୍ଞାସା – (ପ୍ରବନ୍ଧ)
ଅଭିନବ ଭଞ୍ଜ ଭାରତୀ – ୧୯୯୩

୩୭. ଓଡ଼ିଆ ଶବ୍ଦତାତ୍ତ୍ୱିକ ଅଭିଧାନ – (ପ୍ରବନ୍ଧ)
ସମୟ : ତା ୨୮–୧୦–୧୯୯୭

୩୮. ହାମର୍ ଭାଷାପ୍ରେମୀ ଡ. ମାନସିଂହ – (ପ୍ରବନ୍ଧ)
ଅଗ୍ନିଶିଖା : ତା ୮–୧୨–୨୦୦୧

ଏହା ବାହାରେ ସମକାଳର ଅନ୍ୟାନ୍ୟ ପତ୍ର ପତ୍ରିକାରେ ମଧ ତାଙ୍କର ଆହୁରି କେତେକ ପ୍ରବନ୍ଧ ଓ ସମାଲୋଚନା ପ୍ରକାଶ ପାଇଥିବା ସମ୍ଭବ । ଆମ ପାଇଁ ଏକ ଶୁଭ ସମ୍ବାଦ ଯେ, ତାଙ୍କର ଗୋଟିଏ ପ୍ରବନ୍ଧ କିମ୍ବା ଖଣ୍ଡେ ପୁସ୍ତକ ପ୍ରକାଶିତ ହେଲେ ସମଗ୍ର ଓଡ଼ିଶାରେ ତାର ଚର୍ଚ୍ଚା ହେଉଥିଲା, ଏହାହିଁ ଅତ୍ୟନ୍ତ ଗର୍ବ ଓ ଗୌରବର କଥା ।

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗବେଷଣା ଓ ସମାଲୋଚନା କ୍ଷେତ୍ରରେ ପଣ୍ଡିତ

ନୀଳମାଧବ ପାଣିଗ୍ରାହୀ ଜଣେ ବହୁମୁଖୀ ପ୍ରତିଭାଶାଳୀ ସତ୍ ଗବେଷକ ଭାବେ ଓଡ଼ିଶାର ସାହିତ୍ୟିକ ମଣ୍ଡଳୀର ଗଭୀର ଦୃଷ୍ଟି ଆକର୍ଷଣ କରି ପାରିଛନ୍ତି । ତାଙ୍କର ସମାଲୋଚନା ସାହିତ୍ୟରେ ଆମେ ତାଙ୍କର ଗଭୀର ପ୍ରଜ୍ଞା ଓ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ଦେଖିବାକୁ ପାଉଁ । ତାଙ୍କର ଗବେଷଣା ପ୍ରବନ୍ଧ ଗୁଡ଼ିକୁ ଗଭୀର ଭାବେ ଅନୁଧ୍ୟାନ କଲେ ଜଣାପଡ଼େ ଯେ, ସେ ଜଣେ ସଫଳ ଗଦ୍ୟଶିଳ୍ପୀ, ବହୁପାଠୀ ସଂସ୍କୃତ ବିଦ୍ୱାନ ଏବଂ ଜ୍ଞାନ ତପସ୍ୱୀ ! ତାଙ୍କ ସମାଲୋଚନାମୂଳକ ପ୍ରବନ୍ଧଗୁଡ଼ିକ ବହୁ ସୁଶୃଙ୍ଖଳିତ ଯୁକ୍ତି, ଉଚ୍ଚ ମାର୍ଜିତ ଚିନ୍ତାଧାରା ଏବଂ ବିଚାର ବିଶ୍ଳେଷଣର ତୀକ୍ଷ୍ଣତାରେ ସମୃଦ୍ଧ । ପୁଣି ଆମେ ଦେଖିବାକୁ ପାଉଁ ଆଦର୍ଶ ଚରିତ୍ର ମାନଙ୍କ ଗୁଣକୀର୍ତ୍ତନ । ତାଙ୍କ ସମାଲୋଚନାରେ ଯୁକ୍ତିର ଯେଉଁ ମହତ୍ତ୍ୱ ଫୁଟିପାରିଛି, ଚିନ୍ତାର ଯେଉଁ ଉନ୍ମେଷ ହୋଇଛି, ତାହା ଅନୁଭବୀ ସହୃଦୟ କାବ୍ୟ-ସମାଲୋଚକ ନହେଲେ ବୁଝିବା କଷ୍ଟକର ।

ମୌଳିକ ପ୍ରବନ୍ଧ ଓ ସମାଲୋଚନା ଲେଖି ସେ ଯେପରି ଜନପ୍ରିୟ, ମୌଳିକ ସଂଗ୍ରହ ଓ ସମ୍ପାଦନା କ୍ଷେତ୍ରରେ ସେପରି ଅବିସ୍ମରଣୀୟ । ସଂସ୍କୃତ ସାହିତ୍ୟର 'ଗୀତ ପ୍ରକାଶ ପ୍ରବେଶିକା', 'ସଙ୍ଗୀତ କଳ୍ପଲତିକା', 'ଅଭିନୟ ଦର୍ପଣ ପ୍ରକାଶ', 'ସଙ୍ଗୀତାର୍ଣ୍ଣବ ଚନ୍ଦ୍ରିକା'ଭଳି ବହୁ ପ୍ରାଚୀନ ସଂସ୍କୃତ ପୋଥିକୁ ସେ ସୁଚାରୁ ରୂପେ ସମ୍ପାଦନା କରିଛନ୍ତି । ଶୁଦ୍ଧପାଠ ନିର୍ଣ୍ଣୟରେ ସତେ ଯେପରି ତାଙ୍କର ମୌଳିକତା ଫୁଟିପଡ଼େ । ତାର କାରଣ ହେଲା– ନୀଳମାଧବ ବାବୁ ସଂସ୍କୃତ ସାହିତ୍ୟରେ ଜଣେ ଧୁରନ୍ଧର ବିଦ୍ୱାନ୍ । ପ୍ରାଚୀନ ସଂସ୍କୃତ ପୋଥିକୁ ଭଲ ଭାବେ ଅଧ୍ୟୟନ କରି ଶୁଦ୍ଧପାଠ ନିର୍ଣ୍ଣୟ କରିବା ନିଶ୍ଚୟ ଏକ କଷ୍ଟକର ବ୍ୟାପାର; କିନ୍ତୁ ଏଭଳି କଷ୍ଟକର ବ୍ୟାପାର ହେଲେ ମଧ୍ୟ ସେ ନିଜର ଗଭୀର ଅଧ୍ୟବସାୟ ବଳରେ ସେସବୁ ଉତ୍ତମରୂପେ ସମ୍ପାଦନା କରିପାରିଛନ୍ତି ।

ତାଙ୍କର କର୍ମମୟ ଜୀବନରେ ସେ ଅକୁତୋଭୟ, ସ୍ପଷ୍ଟବକ୍ତା, ଦେଶ ଓ ଜାତିର ଜଣେ ହିତୈଷୀ ଭାବରେ ବହୁବାର ବିପଦର ସମ୍ମୁଖୀନ ହୋଇଛନ୍ତି । ଏଥିରୁ ତାଙ୍କର ମାତୃଭାଷା ଓ ସାହିତ୍ୟପ୍ରତି ବିଶେଷ ଅନୁରାଗ ଥିବାର କଥା ଲକ୍ଷଣୀୟ । ଗବେଷକ କେବଳ ଅନୁସନ୍ଧାନରେ ଥାଏ ତା'ନୁହେଁ, ସେ ହେଉଛି ଦ୍ରଷ୍ଟା, କେବଳ ଦ୍ରଷ୍ଟା ନୁହେଁ, ଦିବ୍ୟ ଦ୍ରଷ୍ଟା । ସେ ମୁନି । କେବଳ ଆତ୍ମତତ୍ତ୍ୱ ଓ ଚିନ୍ତାରାଜ୍ୟର ମନନକାରୀ ନୁହେଁ । ଗବେଷକ ବି ମିତ୍ର-ମିଳନସାର ।

—

# ପଞ୍ଚମ ଅଧ୍ୟାୟ

## ଏକ ଦୁର୍ଲଭ ରଚନା
## 'ସମ୍ବଲପୁରୀ ଲୋକ-ସାହିତ୍ୟ'

ଝଙ୍କାର – ୩୬ଶବର୍ଷ ୨ୟ ସଂଖ୍ୟା ଜୁନ୍ ୧୯୮୪
ପ୍ରଣେତା : **କୁମାର ହସନ**
ମନୀଷା ଇଣ୍ଟରନ୍ୟାସନାଲ, ଭୂତାପଡ଼ା, ସମ୍ବଲପୁର,
ପ୍ରକାଶକ : **କେ: କେ: ମିଶ୍ର ଏଣ୍ଡ କୋ:**
ଖଟବିନସାହି, କଟକ

ପଶ୍ଚିମ ଓଡ଼ିଶାର ପ୍ରାୟ କୋଟିଏ ଲୋକ ଆପଣା ଆପଣା ଭିତରେ ଯେଉଁ ଭାଷାରେ କଥାବାର୍ତ୍ତା ହୁଅନ୍ତି, ସୁଖଦୁଃଖ ହୁଅନ୍ତି, ଭାବ ପ୍ରକାଶ କରନ୍ତି ତାହା ଓଡ଼ିଆ ଭାଷା ସହିତ ଯେତିକି ସମାନ, ତହିଁରୁ ସେତିକି ପୃଥକ । ଶବ୍ଦସମ୍ଭାର ଶବ୍ଦଗଠନ ଶୈଳୀ, ବ୍ୟାକରଣଗତ ବୈଶିଷ୍ଟ୍ୟ, ପ୍ରୟୋଗଗତ ବୈଶିଷ୍ଟ୍ୟ, ଉଚ୍ଚାରଣଗତ ବୈଶିଷ୍ଟ୍ୟ ଆଦି ଦୃଷ୍ଟିରୁ ଅନୁମାନ କରିହୁଏ ଯେ ସେ ଭାଷାକୁ ତାହାର ସାଂପ୍ରତିକ ରୂପଗୁଣରେ ମଣ୍ଡିତ କରିଛି ଶହ ଶହ ବର୍ଷର କ୍ରମପରିଣାମ ।

ପୃଥିବୀର ସର୍ବତ୍ର ଲୋକର ଭାବନା ଓ ଅନୁଭୂତିର ପ୍ରଥମ ସ୍ଫୁରଣ ଓ ଅଭିବ୍ୟକ୍ତି ଘଟେ ଧ୍ୱନିର ମାଧ୍ୟମରେ । ସେହି ଧ୍ୱନିର ମୌଳିକ ଧର୍ମରୁ ଗୀତ ଓ ସାଙ୍କେତିକ ବ୍ୟବହାରରୁ ଭାଷା ଓ କାଳକ୍ରମେ ସାହିତ୍ୟର ବିକାଶ ଘଟେ । ଅନୁନ୍ନତ ଅବସ୍ଥାରେ ପ୍ରତ୍ୟେକ ମାନବ-ମହାଗୋଷ୍ଠୀର ଗୀତ ହିଁ ତାହାର ସାହିତ୍ୟ । ଏହି ହେତୁ, ସମ୍ବଲପୁରୀ ଲୋକସାହିତ୍ୟର ଆଦ୍ୟ ଉନ୍ମେଷ ଲୋକଭାଷାନିବଦ୍ଧ ଲୋକଗୀତ ମାଧ୍ୟମରେ ଘଟିବା ସ୍ୱାଭାବିକ ।

ଦୁଃଖର କଥା, ବରଂ ଲଜ୍ଜାର କଥା, ସମ୍ବଲପୁରୀ ଲୋକଗୀତ ଗୁଡ଼ିକର ସ୍ୱକୀୟ ସ୍ୱର ସମ୍ଭାରରେ ଅନନ୍ୟ ସୁଲଭ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ସମାବେଶ ସତ୍ତ୍ୱେ ସେଗୁଡ଼ିକର ସଂଗ୍ରହ ଯଥା ସମୟରେ କରା ହୋଇନାହିଁ । ଫଳତଃ ସେଇ କାନନମଲ୍ଲିକାର ଅଧିକାଂଶ ନିଶ୍ଚୟ ଅକାଳରେ ମଉଳି ଝଡ଼ି ପଡ଼ିଥିବ, କାଳର ଦାବାନଳରେ ପୋଡ଼ି ଯାଇଥିବ ।

ଶ୍ରୀମାନ୍ କୁମାର ହସନ ଏବେ ବହୁ ଶ୍ରମସ୍ୱୀକାରପୂର୍ବକ ସେଥିରୁ ଯେତେକ ଉଦ୍ଧାର ଓ ସଂଗ୍ରହ କରି ତାଙ୍କର 'ସମ୍ବଲପୁରୀ ଲୋକସାହିତ୍ୟ' ବହିରେ ପତ୍ରସ୍ଥ କରିଛନ୍ତି, ତାହା ମଧ୍ୟ ସେହି ଶୋଚନୀୟ ଦଶାର ସମ୍ମୁଖୀନ ହୋଇଥାଆନ୍ତା । ତେଣୁ କୁମାର ହସନ୍ ତାଙ୍କର ସାଧୁଉଦ୍ୟମ ପାଇଁ ସମସ୍ତଙ୍କ ସାଧୁବାଦର ହକ୍‌ଦାର । ସମ୍ବଲପୁରୀ ସାହିତ୍ୟର ଇତିହାସ ମଧ୍ୟ ସେଥିପାଇଁ ତାଙ୍କୁ ସପ୍ରଶଂସ ସ୍ମରଣ କରିବ । ତାଙ୍କର ସଂଶିତ ପୁସ୍ତକଟି ପନ୍ଦରଗୋଟି ପରିଚ୍ଛେଦର ସମାହାର । ସଜନୀ, ହୁମୋ ବଉଳୀ, ହଳିଆଗୀତ, ଛଟା ବା ଦାଏକା, କରମା, ଡାଲଖାଇ, ରସରକେଲି, କୈଁସାବାଡ଼ି, ଡଁଡ଼ା-ଡ଼ିଗ୍‌ଡ଼ିଗୋ, ଝାରପତରିଆ – ଏପରି ନଅଗୋଟି ଶ୍ରେଣୀରେ ସମ୍ବଲପୁରୀ, ଲୋକଗୀତଗୁଡ଼ିକୁ ବିଭକ୍ତ କରାଯାଇ ପ୍ରତ୍ୟେକଟି ବିଭାଗର ଆଲୋଚନା ପାଇଁ ପୁସ୍ତକଟିରେ ଗୋଟିଏ ଗୋଟିଏ ପରିଚ୍ଛେଦ ବିନିଯୁକ୍ତ ହୋଇଛି । ଏହାଛଡ଼ା 'ସଜନୀଶ୍ରେଣୀୟ ଗୀତରେ 'ପ୍ରଣୟଚିତ୍ର', 'ଲୋକଗୀତରେ ସମ୍ବଲପୁରୀ ଝିଅ', ସମ୍ବଲପୁରୀ ଲୋକଗୀତରେ ସାମାଜିକ ଚିତ୍ର ଓ 'ଚେତନା' ନାମକ ତିନୋଟି ସ୍ୱତନ୍ତ୍ର ପରିଚ୍ଛେଦରେ ସମ୍ବଲପୁରୀ ଲୋକଗୀତକୁ, ବିଶେଷରେ 'ସଜନୀ' ଗୀତକୁ ଭିତ୍ତି କରି ଉକ୍ତ ଶୀର୍ଷକତ୍ରୟର ବିଷୟବସ୍ତୁ ସମ୍ୟକ୍ ଭାବରେ ଆଲୋଚିତ ହୋଇଛି । ଗେୟ ରଚନାବଳୀର ଆଲୋଚନା ସହିତ 'ସମ୍ବଲପୁରୀ ଭକାନୀ', 'ସମ୍ବଲପୁରୀ ଢଗଢମାଳୀ' ଏବଂ 'ସମ୍ବଲପୁରୀ ଲୋକଗୀତ'ରେ 'ତରାନା' ଶୀର୍ଷକ ଆହୁରି ତିନୋଟି ପରିଚ୍ଛେଦରେ ଶୀର୍ଷକ ସୂଚିତ ବିଷୟବସ୍ତୁମାନଙ୍କର ଆଲୋଚନା କରାହୋଇଛି । ଏ ସବୁର ପୁରୋଭାଗରେ 'ସମ୍ବଲପୁରୀ ଲୋକସାହିତ୍ୟ – ଏକ ସଂକ୍ଷିପ୍ତ ଭୂମିକା' ଶୀର୍ଷକ ସତର ପୃଷ୍ଠାବ୍ୟାପୀ ଯେଉଁ ସାରଗର୍ଭକ, ବିଶଦ ଓ ତଥ୍ୟଖଚିତ ଆଲୋଚନା ଶ୍ରୀମାନ୍ ହସନ୍ କରିଛନ୍ତି ତାହାହିଁ ତାଙ୍କର ପ୍ରୋକ୍ତ ଅନ୍ୟାନ୍ୟ ଆଲୋଚନା ଓ ଅନେକତ୍ର ନିବାର୍ଯ୍ୟ ବା ଅନାବଶ୍ୟକ ମନ୍ତବ୍ୟମାନଙ୍କ ଅପେକ୍ଷା ଅଧିକ ଉପାଦେୟ ବୋଧହୁଏ ।

ମନ୍ତବ୍ୟଗୁଡ଼ିକୁ ନିବାର୍ଯ୍ୟ ବା ଅନାବଶ୍ୟକ କହିବାର କାରଣ ଅଛି । ଲୋକଗୀତର ଭାଷାରେ ତ ପ୍ରାୟ କୁତ୍ରାପି ଅବୋଧ୍ୟତା ନଥାଏ । ସେଗୁଡ଼ିକର ଭାବ ମଧ୍ୟ ପ୍ରାୟ ସର୍ବତ୍ର ଅପିହିତ, ଦିଗମ୍ବର, ସମ୍ବଲପୁରୀ ଭାଷାରେ ସେଗୁଡ଼ିକୁ ଅନ୍ତତଃ 'ଅଛିଁଟା' କୁହାଯାଇପାରିବ । ଯେଉଁ ଠାରେ ଓ ଯେଉଁ ମୁହୂର୍ତ୍ତରେ ଭାଷା ଓ ଭାବକୁ ଛାଞ୍ଚି ପୋଛି, ରନ୍ଦା ମାରି ଚିକ୍‌କଣ କରିବାର ଉଦ୍ୟମ ହୁଏ, ସେଠାରେ ତତ୍‌କ୍ଷଣାତ୍ ଲୋକଗୀତର 'ସ୍ୱଭାବ' ଓ ଚରିତ୍ର ନଷ୍ଟ ହୁଏ, ତା'ର ରୂପ ବିରୂପ ହୁଏ । ତେଣୁ ସଂଶିତ ପୁସ୍ତକରେ ଲୋକଗୀତର ପଦମାନ ଉଦ୍ଧାର କରି ଲେଖକ, କହିବାକୁ

ଗଲେ ପଦେ ପଦେ, ଯେଉଁ ବ୍ୟାଖ୍ୟା ଦେଇଛନ୍ତି ତାହାର ଅନିବାର୍ଯ୍ୟତା ସ୍ୱୀକାର୍ଯ୍ୟ ନୁହେଁ । ଲୋକଗୀତର ଭାବ ବା ରସମଞ୍ଜୁଷା ଖୋଲିବାପାଇଁ ଯଦି ବ୍ୟାଖ୍ୟା କଞ୍ଚିକାର ଆବଶ୍ୟକତା ଅନୁଭୂତ ହୁଏ ତେବେ ସେପରି ଗୀତ କି ଲୋକଗୀତ ? ଏପରି କି ସୁଗଭୀର ବା ସମୁଚ୍ଚ ଭାବଗର୍ଭା ଅଭିଜାତ 'କବିତାର ରସାସ୍ୱାଦ୍ୟତା ମଧ୍ୟ ବ୍ୟାଖ୍ୟାସାପେକ୍ଷ ନହେବା ଉଚିତ । ସେପରି ସାପେକ୍ଷତା ବିରୁଦ୍ଧରେ ଜଣେ ସମାଲୋଚକ ଆକ୍ଷେପ କରି ଲେଖି ଯାଇଛନ୍ତି –

''କାବ୍ୟାନ୍ୟପି ଯଦୀମାନୀ ବ୍ୟାଖ୍ୟାଗମ୍ୟାନି ଶାସ୍ତ୍ରବତ୍ ।
ଉତ୍ସବୋ ସୁଧିୟାଂ ହନ୍ତ ! ହତା ଦୁର୍ମେଧସା ବୟମ୍ ।।''

ଅବଶ୍ୟ ସମ୍ବଲପୁରୀ ଭାଷାନଭିଜ୍ଞ ପାଠକମାନଙ୍କ ପକ୍ଷରେ ଲେଖକଙ୍କ ଟୀକାଟିପ୍ପଣୀ ଅନାବଶ୍ୟକ ନ ହୋଇପାରେ ।

ଯାହା ହେଉ, ସାମୂହିକ ଭାବରେ ପ୍ରତ୍ୟେକ ଶ୍ରେଣୀର ଲୋକଗୀତର ଚରିତ୍ର, ସେଗୁଡ଼ିକର ଅନ୍ତର୍ନିହିତ ସନ୍ଦେଶ, ସେଗୁଡ଼ିକର ସାମାଜିକ ବା ବ୍ୟକ୍ତିଗତ ପୃଷ୍ଠଭୂମି ପ୍ରଭୃତି ପ୍ରକାଶ କରିବାକୁ ଯାଇ ଲେଖକ ଯେପରି ଉତ୍ସାହ ପ୍ରଦର୍ଶନ କରିଛନ୍ତି, ଯେପରି ନିରଙ୍କୁଶ ଭାଷା ବ୍ୟବହାର କରିଛନ୍ତି, ତାହା ସମ୍ବଲପୁରୀ ଲୋକଗୀତ ପରି ସ୍ୱଚ୍ଛନ୍ଦ ତରଳ ସ୍ୱତଃସ୍ଫୁର୍ତ୍ତ ପ୍ରବହମାନ, ଧ୍ୱନିମୁଖର ଓ ପ୍ରାଣବନ୍ତ । ଦୃଷ୍ଟାନ୍ତ ସ୍ୱରୂପ ସଜନୀ ଗୀତର ପ୍ରାଗ୍‌ଭାଷାରେ ସେ ଶୁଣାଇଛନ୍ତି,

''ସଜନୀ ଜଡ଼ ବା ମୃତ ନୁହେଁ । ସେ ଚିରଜୀବିତ ଭାବନା ପରି ମଧୁର କଳ୍ପନା ପରି କମନୀୟ, ସ୍ୱପ୍ନ ପରି ସଞ୍ଚରଣଶୀଳ, ଆଉ ଜୀବନ ପରି ଯଥାର୍ଥ । ସଜନୀ ଶୋଷିତ ସର୍ବସାଧାରଣର ପ୍ରତିନିଧିତ୍ୱ କରି ଆସିଛି । ସଜନୀ ଗ୍ରାମ୍ୟ ଯୁବମାନସର ଆବେଗିତ ଗୀତି ପ୍ରତିକ୍ରିୟା । ତା'ର ମୁକ୍ତ ସ୍ୱାଧୀନଚିନ୍ତା ଆତ୍ମପ୍ରକାଶର ସୁପରିବାହକ । ତା'ର ଯୌବନସୁଲଭ ଉନ୍ମାଦନା ଉଦ୍ଦୀପନାର ସମବାଚୀ । ପ୍ରାଚୀନ ଜରାଜୀର୍ଣ୍ଣ ବୃଦ୍ଧ କୁସଂସ୍କାର ନୀତିନିୟମ, ବୈଷମ୍ୟ, ଜାତିଆଣଭାବ ବିରୁଦ୍ଧରେ ଏକ ଆଦିମ ଯୁଦ୍ଧ ଡାକରା । ମୁକ୍ତି ପ୍ରଗତିର ଆହ୍ୱାନ, ସ୍ନେହ-ପ୍ରେମ ମମତାର ପ୍ରାକୃତିକ ବଣ୍ୟ ଝରଣା, ସାମାଜିକ ଅସାମାଜିକତାର ଆଗ୍ନେୟ ଆଲେଖ୍ୟ, ଉନ୍ମତ୍ତ ତରୁଣ-ତରୁଣୀର ତାରୁଣ୍ୟର ଓଠର ସ୍ମିତ ହସ ଆଉ ଆଖିର ଲୁହ; ସୂତ୍ର ପ୍ରମାଣେ କହିଲେ ସଜନୀ ହେଉଛି ଶାନ୍ତି, ମୈତ୍ରୀ, ପ୍ରଗତିର ସଙ୍କେତ, ମାନବିକତାର ଏକ ଉଗ୍ର ବାରେଣୀ ଧ୍ରୁବତାରା ।'' (ପୃ: ୧୯)

ସଜନୀ ଗୀତର ଅଶ୍ଳୀଳତା ବିରୁଦ୍ଧରେ କେହି କେହିଁ କରୁଥିବା ଆକ୍ଷେପ ସମ୍ପର୍କରେ ଲେଖକ ଲେଖିଛନ୍ତି,

"ସଜନୀ ସମଗ୍ର ଜୀବନର ସ୍ଖଳନର ଅଭିଲେଖ, ଜୀବନ ପରି ଶ୍ଳୀଳ ଆଉ ଅଶ୍ଳୀଳ, କାହାର ଜୀବନରେ ତଥାକଥିତ ଅଶ୍ଳୀଳତା ନାହିଁ ? × × ପ୍ରକୃତରେ ଯଦି ଜୀବନରୁ ଅଶ୍ଳୀଳତା ନାମଧେୟ ଅଜବ୍ ବସ୍ତୁକୁ ବାଦ୍ ଦେଇ ଦିଆଯାଏ ତେବେ ଜୀବନରେ ଆଉ କ'ଣ ବା ରହିଲା ?"

ଏଠାରେ ପାଠକ ହୁଏତ ଏକ ପ୍ରତିପ୍ରଶ୍ନ କରିବ, "ଜୀବନରୁ ସଜନୀ ଗୀତର ଅନ୍ତର୍ନିହିତ ସ୍ଖଳନର ଅଭିଲେଖକୁ ବାଦ୍ ଦେଲେ ଯାହା ରହିବ ତାହାକୁ ଭିତ୍ତି କରି ଲୋକସାହିତ୍ୟର ପର୍ଣ୍ଣକୁଟୀର ଶୋଭାବର୍ଣ୍ଣନା କଲେ କ'ଣ ଚଳିବ ନାହିଁ ?"

କେଉଁ ସାହିତ୍ୟରେ ଅଶ୍ଳୀଳତା ନାହିଁ ? ସଜନୀଗୀତ ପରି ଅପରିପକ୍ୱ, ଅପରିଣତ ଓ ଅପିହିତ ରଚନାରେ ଦୃଷ୍ଟିଗୋଚର ହେଉଥିବା ସ୍ୱାଭାବିକ ଶୈଶବ ଅଶ୍ଳୀଳତା ସମ୍ପର୍କରେ ପ୍ରଶ୍ନ ଉତ୍‌ଥାପନ ବା ଅଶ୍ଳୀଳତାର ପକ୍ଷସମର୍ଥନ ଅବାନ୍ତର ।

ଶେଷରେ ସମ୍ବଲପୁରୀ ଲୋକଗୀତରେ "ତରାନା" ନାମକ ପରିଚ୍ଛେଦରେ ଲେଖକ ଦେଖାଇବାର ଉଦ୍ୟମ କରିଛନ୍ତି ଯେ ସମ୍ବଲପୁରୀ ଲୋକଗୀତ ମଧ୍ୟରେ ବି ତରାନା ଲୋକରୀତିରେ ଯତ୍‌କିଞ୍ଚିତ ପରିବର୍ତ୍ତିତ ରୂପ ନେଇ ବିଦ୍ୟମାନ । "କୌଣସି ଏମିତି ଲୋକଗୀତ ବା ଲୋକ-ରାଗରାଗିଣୀ ନାହିଁ ଯୋଉଥିରେ ଏ ଲୋକ ତରାନାର ବ୍ୟବହାର କରାଯାଏ ନାହିଁ ।" ମାତ୍ର ଏପରି ଉକ୍ତି ତରାନା ସମ୍ପର୍କରେ ଭ୍ରାନ୍ତ ଧାରଣାରୁ ଉତ୍ପନ୍ନ । ସ୍ୱର ସଂଯୁକ୍ତ ଯେକୌଣସି ରଚନାକୁ ରାଗ ବା ରାଗିଣୀ ବୋଲି ମନେ କରିବା ଯେପରି ଅତି ମୂଲ୍ୟାୟନ, ଯେକୌଣସି ପ୍ରକାରେ ଉଚ୍ଚାରିତ ତା, ରେ, ନା, ରେ ଆଦି ବର୍ଣ୍ଣର ସମାହାରକୁ ଉତ୍କୃଷ୍ଟ ସଙ୍ଗୀତର ତରାନା ମନେ କରିବା ତୃଣକୁ ତରୁ ମନେ କରିବା ପରି କିମ୍ବା କାଉର କାଆକୁ କୋଇଲିର କୁହୁ କହିବା ପରି କଳ୍ପନା ଜଳ୍ପନାର ସମାନ ।

ଶ୍ରୀମାନ୍ ହସନ୍ ଏ ବହିଟି ପ୍ରଣୟନ କରି ଥିବାରୁ ଅଶେଷ ଧନ୍ୟବାଦ ଭାଜନ । ତାଙ୍କ ତରଳ ଲେଖନୀରୁ ଆହୁରି ସାହିତ୍ୟ ରସଧାରା ବାହାରି ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିବ ବୋଲି କାମନା ।

**ଶ୍ରୀ ନୀଳମାଧବ ପାଣିଗ୍ରାହୀ**

—

# ଷଷ୍ଠ ଅଧ୍ୟାୟ

## ସାହିତ୍ୟିକ ପତ୍ରାବଳୀ

(୧) ନୀଳମାଧବ ପାଣିଗ୍ରାହୀଙ୍କ ନିକଟକୁ କବି ରାଧାମୋହନ ଗଡ଼ନାୟକଙ୍କ ପତ୍ର :

(୧)

AT/PO : Kalandapal ୨୬।୧୧।୭୯
Via : Banarpal, Angul
Dt. Dhenkanal

ପରମ ପ୍ରୀତିଭାଜନେଷୁ,

୧୦।୧୫ ଦିନ ହେଲା ମୁଁ ଭୁବନେଶ୍ୱରରେ ଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍‌କୁ ମୁଁ Contest କରିଥିଲି । ୫ଟା ଭୋଟ୍‌ରେ ହାରିଗଲି । କାଲି ଘରକୁ ଫେରି ଆପଣଙ୍କ ପ୍ରେରିତ ବହିଟି ପାଇଲି । ମନରେ ଅଶ୍ୱସ୍ତି । ମୋ ଜୀବନରେ ଦୟାମୟଙ୍କର ଦାନ ନାହିଁ ।

ଆପଣଙ୍କ ସହିତ ସାକ୍ଷାତ୍ ହେବାର ବାସନା ମନରେ ପ୍ରବଳ । ଡିସେମ୍ବର ମାସର ଦ୍ୱିତୀୟ ସପ୍ତାହ ଆଡ଼କୁ ଯିବାର ଆଶା । ଆପଣ ଉଭୟ ନମସ୍କାର ନେବେ । ପୁଅଝିଅଙ୍କୁ କଲ୍ୟାଣ ଦେବେ ।

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୨)

ଭୁବନେଶ୍ୱର
୨୩।୩।୮୦

ପରମ ପ୍ରୀତିଭାଜନ ନୀଳମାଧବ ବାବୁ,

ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍‌କୁ ମୁଁ ପୁଣି ଛିଡ଼ା ହୋଇଥିଲି । ଗଲା ୨୦ ତାରିଖରେ ନିର୍ବାଚନ ଥିଲା । ମୁଁ ଏଥର ମଧ କୃତକାର୍ଯ୍ୟ ହୋଇ ପାରିଲି ନାହିଁ ।

ସେଇ ନିର୍ବାଚନ ପାଇଁ ତାର ଦଶଦିନ ଧରି ବ୍ୟସ୍ତ ଥିଲି । ଆପଣଙ୍କ ପତ୍ର ପାଇ ତାର ଉତ୍ତର ଦେଇ ପାରିଲି ନାହିଁ । ତା' ପୂର୍ବରୁ ମୁଁ ମୋର ଦୁରବସ୍ଥା ଜଣାଇ

ପତ୍ର ଦେଇଥିଲି । ବର୍ତ୍ତମାନ ସମୟ ପାଇ ଲେଖୁଚି ।

୨୦ରେ ଥିଲା ନିର୍ବାଚନ, ୨୦ ଓ ୨୧ରେ ଥିଲା ସିନେଟ୍ ମିଟିଂ ଓ ୨୨ରେ ଥିଲା ଏକାଡେମୀ ମିଟିଂ । ଆଜି ସମୟ ମିଳିଚି ।

କାଲି ଗାଁକୁ ଯିବି । ଆପଣଙ୍କ ପତ୍ର ସେଇଠି ପାଇବି, ଆଶା । ଆକସ୍ମିକ ଭାବରେ ଆର ଝିଅଟିର ବିଭାଘର ହୋଇଗଲା, ବର୍ତ୍ତମାନ ଆପଣ ନିଶ୍ଚିନ୍ତ । ଆଉ ଭାବନା ନାହିଁ । ଆଉ ଯାହା ତା କିଛି ନୁହେ । ବର୍ତ୍ତମାନ ସାରସ୍ୱତ ସେବା ନିର୍ବିଘ୍ନରେ କରିହେବ । କରିବାକୁ ବଦ୍ଧପରିକର ହୁଅନ୍ତୁ । ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରନ୍ତୁ । ଏଇ ଅନୁରୋଧ ।

ମୁଁ ମଧ୍ୟ ସେଥିପାଇଁ ମନ ଦେବି । ଅଯଥା ସମୟ ଅପଚୟ କରିବି ନାହିଁ ।

ସମସ୍ତେ କୁଶଳରେ ଥିବେ । ସ୍ନେହ ନେବେ । ଉଭୟ ଜୋଇଁଙ୍କର ଠିକଣା ମୋ ପାଖକୁ ପଠାଇବେ – ମୋର ପ୍ରୟୋଜନ ଅଛି ।

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୩)

C/45 (Flat) unit-VIII
Bhubaneswar-3

ପ୍ରୀତିଭାଜନେଷୁ,

ଆପଣଙ୍କ ଗାଁ ଠିକଣାରେ ଚିଠି ଦେଇଥିଲି । କେମିତି ପାଇଲେ ନାହିଁ ?

ଫେବୃୟାରୀ ୬ ତାରିଖରେ କଟକ ବଡ଼ ଡାକ୍ତରଖାନାର ନର୍ସିଙ୍ଗ୍ ହୋମ୍ ନ୪ମ୍ବରରେ ଆମେ ରହିଲୁଁ । ୧୦ ତାରିକରେ ଅପରେସନ୍ ହେଲା । ସର୍ଜନ Dr. P. L. Sai, ସଫଳ ଅପରେସନ୍ ।

ଆମେ ୨୦ ତାରିକରେ କଟକରୁ ଭୁବନେଶ୍ୱର ଫେରିଲୁଁ । ଦୀପକ ଆଉ ସାତଦିନ ଆମ ପାଖରେ ରହିଲା । ୨୭ ତାରିଖରେ ଗୋଟାଏ ଗାଡ଼ିକରି ଆମେ ଦୁଇପ୍ରାଣୀ ଯାଇ ତାକୁ ଘରେ ଛାଡ଼ି ଦେଇ ଆସିଲୁଁ । ପୁଲକ ଓ ଆଭା ଗାଁଠି ଥିଲେ, ତାଙ୍କୁ ନେଇ ଆସିଲୁ ।

ବଡ଼ ଦୁଇ ଜଣଙ୍କର ପରୀକ୍ଷା, ଏପ୍ରିଲ୍ ୫ରେ । ତେଣୁ ଆମେ ସେ ଦୁହିଁଙ୍କ ପଢ଼ାପଢ଼ିରେ ଉତ୍କଣ୍ଠିତ ! ଦୀପକ ବର୍ତ୍ତମାନ ରୋଗମୁକ୍ତ ।

ଆପଣ ଓ ଆଉ କେତେଜଣ ବନ୍ଧୁଙ୍କର ସ୍ନେହ ଓ ଶୁଭେଚ୍ଛାରେ ସେ ଭଲହୋଇ ପାରିଚି । ଦୀପକର ଅପରେସନ୍ ପାଇଁ ଆପଣ ଯେଉଁ ଅଢ଼େଇଶହ

ଟଙ୍କା ଆମକୁ ଦେଇ ଯାଇଥିଲେ ତାହା ଆପଣଙ୍କ ହୃଦୟବତ୍ତା ଓ ମମତା ପ୍ରତୀକ–ଆମ ପରିବାର ପକ୍ଷରେ ତାହା କୋଟିନିଧି, ତେଣୁ ଶେଷରେ ଆମେ ତାହା ରଖିବାକୁ ବାଧ ହେଲୁଁ ।

ଆପଣଙ୍କର ସ୍ନେହ ମମତା ଆମ ପରିବାର ପ୍ରତି ଥାଉ–ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ।

ଜୋଇଁ ଓ ଶାରଦା, ତାଙ୍କ ପିଲାପିଲୀଙ୍କୁ ସ୍ନେହ ଦେଇ ରହୁଚି ।

ଆପଣଙ୍କର

ରାଧାମୋହନ ଗଡ଼ନାୟକ

(୪)

୨୭।୧୨।୮୦

କଲଣ୍ଡାପାଳ

ପ୍ରୀତିଭାଜନେଷୁ,

ଆନନ୍ଦର ବିଷୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆପଣଙ୍କୁ କୃତୀ ସାହିତ୍ୟିକ ଭାବରେ 'ଭରତ ଚନ୍ଦ୍ର ନାୟକ ସ୍ମୃତି ପୁରସ୍କାର' ପ୍ରଦାନ କରୁଛନ୍ତି । ସେ ଉତ୍ସବରେ ଉପସ୍ଥିତ ହେବାପାଇଁ ମୁଁ ନିମନ୍ତ୍ରଣ ପାଇଅଛି ।

ଯଦି ଯାଇପାରେ, ଆପଣଙ୍କ ଆନନ୍ଦରେ ଭାଗ ନେଇ ପାରନ୍ତି –

ଘରେ ସମସ୍ତେ କୁଶଳରେ ଥିବେ, ଆଶା । ନିଜେ ନମସ୍କାର ନେବେ, ଗୃହିଣୀଙ୍କୁ ଦେବେ, ପିଲାପିଲୀଙ୍କୁ ସୁକଲ୍ୟାଣ ।

ଶୁଭାନୁଧ୍ୟାୟୀ

ରାଧାମୋହନ ଗଡ଼ନାୟକ

(୫)

୧୮।୩।୮୧

ଭୁବନେଶ୍ୱର

ପ୍ରୀତିଭାଜନ ନୀଳମାଧବ ବାବୁ,

ଯା' ଭିତରେ ମୁଁ ସୁନ୍ଦରଗଡ଼ ଯାଇଥିଲି । ମୋ ସାଙ୍ଗରେ ମୋର ତିନୋଟି ନାତି ଥିଲେ । ଗୋଟାଏ ଗାଡ଼ିରେ ଯାଇଥିଲୁଁ । ସେଇ ଗାଡ଼ିରେ ଫେରିଲୁଁ । ଇଚ୍ଛା ଥିଲେ ସୁଦ୍ଧା ଆପଣଙ୍କ ଘର ପାଖରେ ଓହ୍ଲାଇ ପାରିଲୁ ନାହିଁ । ସେଦିନ ଅନୁଗୁଳରେ ମୋର ଗୋଟାଏ ମିଟିଂ ଥିଲା । କାଲି ସିନେଟ୍ ମିଟିଂଥିଲା, ଆଜି ମଧ । ଏପତ୍ର ଲେଖିବାର ସ୍ୱତନ୍ତ୍ର କାରଣ –

କବି ମାୟାଧର ମାନସିଂହଙ୍କ ସ୍ମୃତିପାଇଁ କୋଡ଼ିଏ ହଜାର ଟଙ୍କା ଚାନ୍ଦା ଉଠା ହେଉଚି, ସେଥିରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପୁରସ୍କାରର ବ୍ୟବସ୍ଥା ହେବ । ମୁଖ୍ୟ ଅଧ୍ୟାପକ ଡକ୍ଟର୍ ଶ୍ରୀଯୁକ୍ତ ସୂର୍ଯ୍ୟକାନ୍ତ ଦାସ ତାହାର ସମସ୍ତ ଭାର ନେଇଛନ୍ତି, ତେଣୁ ତାଙ୍କର ପ୍ରଚେଷ୍ଟାକୁ ସଫଳ କରିବାପାଇଁ ଆମର ତାଙ୍କୁ ×× କରିବା ଉଚିତ । ତେଣୁ ମୋର ଅନୁରୋଧ ଏ ସମ୍ପର୍କରେ ତାଙ୍କ ନିକଟକୁ ଟ୧୦୧ଙ୍କା ପଠାଇ ମାୟାଧର ମାନସିଂହଙ୍କ ସ୍ମୃତିକୁ ସଞ୍ଜୀବିତ କରିବେ । ଘରକୁ ଫେରି ଚିଠି ଦେବି । ମୋ ପାଖକୁ ଏ ସମ୍ପର୍କରେ ଘର ଠିକଣାରେ ପତ୍ର ଦେବେ ।

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୬)

୮।୪।୮୧
ଅନଗୁଳ

ପ୍ରିୟବନ୍ଧୁ,

ମୁଁ ଆଜି କଟକ ଯାଉଚି, କାଲି ଶାରଳା ମହାବିଦ୍ୟାଳୟ, ରାହାମା ପରୀକ୍ଷା Supervise କରିବାକୁ ଯିବି । ୮ ଓ ୯ ଉଭୟ ଦିନ ଦେଖିବି । ଫେରିବି ଶନିବାର । ତେଣୁ ଆପଣ ଶନିବାର ଅପେକ୍ଷା କରିବେ ନାହିଁ ।

ମୁଁ ଯଦି ଶନିବାର ଆସି ବଲାଙ୍ଗିର ଚିଠି ପାଇବି ତେବେ ରବିବାର ଯିବି । ସେଇ ରବିବାର ସାଢେ ଗୋଟାଏ ବେଳକୁ ଅପେକ୍ଷାକଲେ ଉପରବେଳା ସନ୍ଧ୍ୟାରେ ବଲାଙ୍ଗିର ଯିବା । ସମ୍ବଲପୁରରେ ବୁଢ଼ାରଜା Programmee ହୋଇପାରିବ ନାହିଁ । ମୁଁ ସେଥିପାଇଁ Dr. Biswal ଠାକୁ ଚିଠି ଦେଉଚି । ଆପଣଙ୍କ ପତ୍ର ଦୁଇଖଣ୍ଡ ଆମୂଳଚୂଳ ପଢ଼ିଲି । ସାକ୍ଷାତ୍‌ରେ ସବୁ ।

ଘରେ ମୋର ନମସ୍କାର ଦେବେ । ପିଲା ମାନଙ୍କୁ ଶୁଭେଚ୍ଛା ।

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୭)

୨୭।୪।୮୧
ଅନଗୁଳ

ପ୍ରିୟବନ୍ଧୁ,

ଆପଣଙ୍କର ୨୪ ତାରିକର ଚିଠିପାଇ ଆନନ୍ଦିତ ହୋଇଚି । କାଲି ୨୬ ତାରିକରେ ସମ୍ବଲପୁର ଯିବାର ଥିଲା । ଶ୍ରୀ ନଟବର ପ୍ରଧାନ, ଭୂତପୂର୍ବ ମନ୍ତ୍ରୀଙ୍କର ପୁତ୍ରର ବାହାଘର ସମ୍ବଲପୁରରେ, ସେଇଥିପାଇଁ ଯିବାର କଥା ।

ମାତ୍ର ୨୫ ତାରିକରୁ ମୋର ତରଳ ଝାଡ଼ା ଅଦ୍ୟାବଧି ବନ୍ଦ ହୋଇନାହିଁ । ସେଇ ବାହାଘରରେ ଯାଇଥିଲେ, ଅପ୍ରତ୍ୟାଶିତ ଭାବରେ ଆପଣଙ୍କ ସହିତ ଦେଖା ହୋଇଥାନ୍ତା । ଆଗରୁ ସ୍ଥିର ହୋଇଥିଲେ ସୁଦ୍ଧା ଦେଖା ହେଲା ନାହିଁ, ତେଣୁ ଚିଠି ଦେଇ ଉତ୍କଣ୍ଠା ସୃଷ୍ଟି କରିବାକୁ ଇଚ୍ଛା ହେଲା ନାହିଁ । ବହୁତ ହଇରାଣ ତ ହୋଇଛନ୍ତି ।

ଆପଣ ତ ସମ୍ବଲପୁରରେ ରହୁଛନ୍ତି–ସହଧର୍ମିଣୀ ବୋଧହୁଏ ଆପଣଙ୍କ ସାଥିରେ ! ତାଙ୍କର ସ୍ୱାସ୍ଥ୍ୟ କେମିତି ? ଯଦି ସମ୍ବଲପୁର ସହରରେ ରହୁଛନ୍ତି, ଘରଠି ତେବେ କିଏ ରହୁଛନ୍ତି ?

ଆପଣ ଯଦି ମେ ପହିଲାରେ ଆସନ୍ତେ ତେବେ ସାଥି ହୋଇ ଭୁବନେଶ୍ୱର ଯା'ନ୍ତେ ! ମୁଁ ଅନଗୁଳରେ ରହିଚି, ଆପଣଙ୍କୁ ଅପେକ୍ଷା କରି ରହିବି ।

ମୋର ନମସ୍କାର ନେବେ, ସହଧର୍ମିଣୀଙ୍କୁ ଦେବେ, ପୁଅବହୁ ଓ ଅନ୍ୟ ପିଲାମାନଙ୍କୁ ସ୍ନେହ ଦେବେ ।

ସାକ୍ଷାତ୍‌ରେ ସବୁ ।

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୮)

୧।୬।୮୨
ଭୁବନେଶ୍ୱର

ପ୍ରିୟବନ୍ଧୁ,

ଆପଣଙ୍କର ୨୦ ତାରିକର ଟେଲିଗ୍ରାମ୍ ୨୧ ତାରିକରେ ସିନେଟ୍ ଓ ଏକାଡ଼େମି ମିଟିଂରୁ ଫେରି ରାତିରେ ପାଇଲି । ତହିଁ ଆରଦିନ ଡିରେକ୍ଟର ମିଟିଂରେ ଥିବାରୁ ଦେଖାକରିପାରିଲି ନାହିଁ । ରବିବାର ତାଙ୍କ ସଙ୍ଗରେ କଥାବାର୍ତ୍ତା କରି ସୋମବାର ଆପଣଙ୍କ ନିକଟକୁ ଲେଖିଦେଲି ଯେ ××× ଆପଣ ସେ ଚିଠି ନିଶ୍ଚୟ ପାଇଥିବେ । ମାତ୍ର ଆପଣଙ୍କଠାରୁ କୌଣସି ଉତ୍ତର ନପାଇ ଆଜି ତାଙ୍କ ନିକଟକୁ ଯାଇ office order ର କପି ତାଙ୍କଠାରୁ ଆଣି ପଠାଇଲି ।

ମୁଁ ୧୪ ତାରିକ ହିନ୍ଦୋଳ ଓ ଅନଗୁଳ ଯାଇ ୨୧ ତାରିକ ୧୧ଟା ପୂର୍ବାର୍ଣ୍ଣ ଭୁବନେଶ୍ୱର ଫେରି ସିନେଟ୍‌ରେ ଯୋଗଦେଲି ୩ଟା ବେଳେ ଏକାଡ଼େମି ମିଟିଂରେ ।

ମୁଁ ଅଦ୍ୟାବଧି Family ଆଣି ନାହିଁ । ଆଶା, ଆପଣ କୁଶଳରେ ଥିବେ । ବିବେକ ସୁନ୍ଦରଗଡ଼ରେ Join କରି ସାରିଥିବ ।

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୯)

୧୭।୬।୮୨
ଭୁବନେଶ୍ୱର

ପ୍ରୀତିଭାଜନେଷୁ,

ଆପଣଙ୍କ ପତ୍ର ପାଇଚି, ମୁଁ ଟିକିଏ ବିଚଳିତ ଥିଲି । ଗାଁକୁ କାଲି ସକାଳେ ଯାଇ ସନ୍ଧ୍ୟାରେ ଫେରିଚି ।

ମୁଁ ତ ଏଠି ସପରିବାର ଅଛି । ଦିଓଟି ନାତିନାତୁଣୀ – ରାନ୍ଧୁଣିଆ ପିଲାଟି । ମନୋରଞ୍ଜନର ଭଣଜା–ସଂଗ୍ରାମ ।

କେବେ ଭୁବନେଶ୍ୱର ଆସିବେ, ଚିଠିରେ ଲେଖିନାହାନ୍ତି । ତେବେ କେବେ ଶୁଭାଗମନ ଜଣାଇବେ । ଘରେ ସମସ୍ତଙ୍କୁ ଯଥାବିଧି ଜଣାଇ ଦେବେ, ନିଜେ ନେବେ ।

ଆମେମାନେ ଏଠି ଏକପ୍ରକାର –

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୧୦)

୧୯।୬।୮୨
ଭୁବନେଶ୍ୱର

ବନ୍ଧୁ,

ମୋର ପତ୍ର ୟା ଭିତରେ ପାଇଥିବେ । ପାଞ୍ଚଜନ୍ୟର ସମ୍ପାଦକଙ୍କ ପାଖକୁ ଯୋଉ ଚିଠି ଲେଖିଥିଲେ, ସେଥିରେ ଅଛି ଆପଣ ୨୫ ତାରିକ ଆଡ଼କୁ ଭୁବନେଶ୍ୱର ଆସୁଛନ୍ତି – ମୋ ଚିଠିରେ ତାହା ମୁଁ ଚାହିଥିଲି, ତାର ଉତ୍ତର ପାଇଗଲି ।

ଶ୍ରୀବଲ୍ଲଭ ବାବୁ ୟା' ଭିତରେ 'ହୀରାଖଣ୍ଡ'ର ସମ୍ପାଦନା ଦାୟିତ୍ୱ ନେବାର ସୁସମ୍ବାଦ ପାଇ ଆଶାତୀତ ଆନନ୍ଦ ଅନୁଭବ କଲି, ତାଙ୍କୁ କହିଦେବେ ।

ମୁଁ ତାଙ୍କ ପାଖକୁ ଚିଠି ଦେବି ।

ସମ୍ପାଦକଙ୍କ ପାଖକୁ ଆପଣଙ୍କର ଚିଠି ଓ କବିତାରୁ ଆପଣଙ୍କ ମନୋଭବର

ମୁଦ୍ରା ପାଇଲି । ପରିବାରକୁ ଶୁଭେଚ୍ଛା ଦେବେ ଓ ନେବେ ।

ରାଧାମୋହନ ଗଡ଼ନାୟକ

(୧୧)

୨୨।୭।୮୩

ଭୁବନେଶ୍ୱର

ପ୍ରୀତିଭାଜନେଷୁ,

ଗୋଟାଏ ଜରୁରି କାମରେ ଗାଡ଼ିରେ ସମ୍ବଲପୁର ଯାଇଥିଲି । ରାସ୍ତାରେ ଶ୍ରୀ ପ୍ରଭାକର ପାଣିଗ୍ରାହୀଙ୍କ ସହିତ ଦେଖାହେଲା । ତାଙ୍କୁ ଆପଣଙ୍କ କଥା ପଚାରି ବୁଝିଲି ଆପଣ ଗାଁରେ ଅଛନ୍ତି । ମୋର ବଦ୍ଧମୂଳ ଧାରଣା ଥିଲା, ଆପଣ ଗୁଜରାଟ ଆଡ଼େ ରହିଯାଇଛନ୍ତି । ତେଣୁ ଆପଣଙ୍କ ପାଖରୁ କୌଣସି ସମ୍ବାଦ ପାଇପାରିନାହିଁ ।

ସେଦିନ ମୋର କୌଣସି ସମ୍ଭାବନା ନଥିଲା, ଆପଣଙ୍କ ଗାଁକୁ ଯାଇ ଆପଣଙ୍କୁ ଦେଖି ଆସିବା । ମୁଁ ଆଉ ଜଣକ ସଙ୍ଗରେ ଯାଇଥିଲି । ତହିଁ ଆରଦିନ ବାହୁଡ଼ାଯାତ, ତେଣୁ ସେ ଭଦ୍ରଲୋକ ଯେତେ ରାତି ହେଇ ଭୁବନେଶ୍ୱରରେ ପହୁଞ୍ଚିବେ, ମୁଁ ତେଣୁ ଆପଣଙ୍କ ସାକ୍ଷାତ୍ ପାଇଁ ବ୍ୟବସ୍ଥା କରିପାରିଲି ନାହିଁ । ସୁଦୀର୍ଘ ସମୟ ଆପଣଙ୍କ ସହିତ ଦେଖା ସାକ୍ଷାତ୍ ନାହିଁ । ମନବ୍ୟଗ୍ର, ବ୍ୟାକୁଳ । ପତ୍ର ପାଇ ଉତ୍ତର ଦେଲେ ସୁଖୀ ହେବି । ଅଧିକନ୍ତୁ ଯଦି ଭୁବନେଶ୍ୱର ଆସିବାର ଥିଲେ, ସାକ୍ଷାତ୍ ସୁନିଶ୍ଚିତ ।

ମୁଁ ବର୍ତ୍ତମାନ ବହୁକୁଟୁମ୍ବ ଜଞ୍ଜାଳରେ ଘାଣ୍ଟି ହେଉଛି । ତିନୋଟି ନାତି, ଗୋଟିଏ ନାତୁଣୀ ଆମ ସଙ୍ଗରେ, ଏ ପରିସ୍ଥିତିରେ ଆପଣଙ୍କୁ ପାଇଲେ ଟିକିଏ ଆଶ୍ୱସନା ।

ସପରିବାର କୁଶଳରେ ଥିବେ, ଆଶା । ମୋର ହାର୍ଦ୍ଦିକ ଶୁଭେଚ୍ଛା ନେବେ, ଅନ୍ୟମାନଙ୍କୁ ଦେବେ ।

ଆପଣଙ୍କର

ସ୍ନେହାନୁବଦ୍ଧ

ରାଧାମୋହନ ଗଡ଼ନାୟକ

(୧୨)

ଭୁବନେଶ୍ୱର

୨୪।୯।୮୩

ପ୍ରୀତିଭାଜନ ନୀଳମାଧବ ବାବୁ,

ଆପଣଙ୍କ ଟେଲିଗ୍ରାମ୍ ପାଇ ସୁଖୀହେଲି । ମାତ୍ର ଚିଠି ଦେଇପାରି ନାହିଁ । ସେଥିପାଇଁ ବ୍ୟଥିତ ।

ୟା' ଭିତରେ ମୋର ସହଧର୍ମିଣୀ ହଳଧର ସାଥିରେ ରେଢ଼ାଖୋଲ ଯାଇଛନ୍ତି । ସେଇଠୁ ସେ ଆଣି ଆମ ଘରଠି ଛାଡ଼ିବେ । ମୁଁ ଗଲେ ତାଙ୍କୁ ନେଇ ଆସିବି ।

ପାବକ, ଆଲୋକ, ପୁଲକ ଆମ ଏଇଠି ଅଛନ୍ତି – ସେମାନଙ୍କ ଜଞ୍ଜାଳରେ ମୁଁ ଅତ୍ୟନ୍ତ ହଇରାଣ ହେଉଚି ।

ଭୁବନେଶ୍ୱର ଆପଣ କେବେ ଆସୁଚନ୍ତି ? ପତ୍ର ଦେବେ ।

ସ୍ନେହ ଓ ଶୁଭେଚ୍ଛା ନେବେ ।

ଶୁଭାନୁଧ୍ୟାୟୀ
ରାଧାମୋହନ ଗଡ଼ନାୟକ

(୧୩)

୧୮।୧।୯୦
ଅନଗୁଳ

ବନ୍ଧୁ,

ଆପଣଙ୍କର ୧୬ର ପତ୍ର ମୁଁ ଆଜି ପାଇ ଆନନ୍ଦିତ – ତା ସାଥିରେ ଆପଣଙ୍କର ସମ୍ବଲପୁରୀ ଭାଷାର କବିତାଟି, ଯେଉଁଟି ପାଇଁ ମୁଁ ଲେଖିଥିଲି ।

ଆଉ ଟିକିଏ ଖୋଜନ୍ତୁ, କାଳେ ମୂଳ କବିତାଟି ମିଳିଯିବ । ନୋହିଲେ ଏଟି. ମୋର ସଞ୍ଚୟ, ''ପତ୍ର ନୁହେ, ପୁଷ୍ପ''ରେ ଦେବି ।

ବର୍ତ୍ତମାନ ଦେହ ଭଲ ନାହିଁ । କଟକ ଯିବାର ଥିଲା, ଯାଉ ନାହିଁ । ଯିବି ବୋଧହୁଏ ଆସନ୍ତା ମଙ୍ଗଳବାର ।

ସପରିବାର ବନ୍ଧୁର ଶୁଭେଚ୍ଛା ନେବେ ।

ଆପଣଙ୍କର
ଗଡ଼ନାୟକ

(୧୪)

୨୯।୭।୯୧
ବାଣୀବିତାନ
ପି.ଓ. ଅନଗୁଳ

ପ୍ରୀତିଭାଜନ ବନ୍ଧୁ,

ଯେଉଁ ଦିନ ତୁମ ଚିଠି ପାଇଲି, ସେଇଦିନ ଜରୁରି କାମରେ କଟକ ଚାଲିଗଲି, ଉତ୍ତର ଯଥା ସମୟରେ ଦେଇପାରି ନାହିଁ । କାଲି ସେ ଆଡୁ ଫେରିଲି ।

ଶ୍ରୀବଲ୍ଲଭ ବାବୁ ଆସିଥିଲେ, ତୁମର ବାଲେଶ୍ୱର ଯିବା କଥା କହୁଥିଲେ, ତୁମେ ମଧ୍ୟ ତୁମ ଚିଠିରେ ସେକଥା ଲେଖିଚ ।

ମୋର ଦେହକଥା ଲେଖିଥିଲି । ସବୁ ତ ଜାଣ ।

AIR ତରଫରୁ ବାରିପଦାରେ କବି ସମ୍ମିଳନୀ ହେଉଚି ୯।୮।୯୧ରେ । ମନୋରମା ମହାପାତ୍ର ସେଥିରେ ଯୋଗ ଦେବାକୁ ଯାଉଛନ୍ତି ୀ ମୁଁ ତାଙ୍କ ସଙ୍ଗରେ ଯିବି ଓ ଫେରିବି, ତାଙ୍କ କାର୍‌ରେ । ତେଣୁ Contact ଗ୍ରହଣକଲି । ନୋହିଲେ ଯାଇ ନଥାନ୍ତି । ଅଦ୍ୟାବଧି ଦୀପକ ଟାଉନ୍‌ରେ ଘରକାମ କରାଉଚି । ଘରରେ କବାଟ ଝରକା ଲାଗିଗଲାଣି ।

ମୁଁ ବଳଭଦ୍ର ବାବୁଙ୍କ ପୁଅ ବାହାଘରରେ ଯାଇ ପାରିନାହିଁ । ମାତ୍ର ତାଙ୍କ ସ୍ତ୍ରୀ ଆସି ବେଭାର ଦେଇଗଲେଣି । କେବେ ଦିନେ ଯା ଭିତରେ ସମ୍ବଲପୁର ଯିବି । ସେତେବେଳେ ତ ତୁମ ପାଖକୁ ଯିବି, ଶ୍ରୀବଲ୍ଲଭବାବୁଙ୍କ ପାଖକୁ ମଧ୍ୟ । ତୁମେ ଦୁଇ ଦିନ ପାଇଁ ମୋ ସାଙ୍ଗରେ ସବିଶେଷ କଥା ହେବା, ମୋର ଆଶା ଓ ଭରସା ।

ଶୁଭେଚ୍ଛା – ଘରେ ମୋର ସ୍ନେହ ଦେବ । ଆମର ଆଉସବୁ ଏକ ପ୍ରକାର । ବର୍ଷା ତ ଚାଲିଚି ।

ଶୁଭାନୁଧ୍ୟାୟୀ
ଗଡ଼ନାୟକ

(୧୫)

ତାରିଖ–୭।୧।୯୨

ପ୍ରିୟବନ୍ଧୁ ନୀଳମାଧବ ବାବୁ !

କାଲି ତୁମ ପାଖକୁ କାର୍ଡ଼ରେ ଚିଠି ପଠାଇଚି, ତାହା ଆଗ ପାଇବ । ଏ ଲଫାପା ପରେ ପାଇବ ।

ମୋର ଦୁଃସମ୍ବାଦ ଜଣାଉଚି, ପୁଣି ଜଣାଉଚି, ମୋର ସାନଭାଇ ମହେଶ୍ୱର ଗଲା ୩୦।୧୨।୯୧ ରାତିରେ ଆମକୁ ଶୋକ ସନ୍ତପ କରି ଇହଧାମ ଛାଡ଼ି ଚାଲିଗଲା । ଆମ ଅବସ୍ଥା କ’ଣ ଲେଖିବି ।

କାଲି ଦଶାହ ଓ ପଅର ଦିନ ଏକ ଦଶାହ, ଆଜି ଆମେ ସ୍ୱପରିବାର ଗାଁକୁ

ସେଥିପାଇଁ ଯାଉଛୁ, ଫେରିବୁ ତା୧୦ରିଖରେ ।

ତୁମ ସୁରେନ୍ଦ୍ରସାଏ ସାଂସ୍କୃତିକ ପ୍ରୋଗ୍ରାମ ଜାନୁଏରୀ ୨୩ ତାରିଖରେ ବୋଲି ଜାଣୁଚି, ସେଥିରେ ଯୋଗଦେଇ ପାରିବି ବୋଲି ମୋର ଆଶା ଓ ଭରସା । ମୋର ଭାଇ ଉପରେ ଯେଉଁ କବିତାଟି ଲେଖିଚି ତାର ଛାପା କପି ଯା ସହିତ ପଠାଇଲି ।

ଗାଁରୁ ଫେରିଲେ ଚିଠିଦେବି । ତୁମେ ତୁମ ତାରିକ କଥା ଲେଖିବ ।.ଟାଉନ୍ ଠିକଣାରେ ।

ଶୁଭେଚ୍ଛା ନେବ ।

ତୁମର
ବନ୍ଧୁ
ଗଡ଼ନାୟକ

(୧୬)

୨୪.୧.୯୩

ପ୍ରୀତିଭାଜନ ବନ୍ଧୁ,

ତମ ଆଡୁ ଆସି ଚିଠି ଦେଇଥିଲି, ନିଶ୍ଚୟ ପାଇଥିବ । ମନ ଅସ୍ଥିର ହେବାରୁ ପୁଣି ଚିଠି ଲେଖୁଚି ।

ତୁମର ପାଣ୍ଡୁଲିପି ଯତ୍ନରେ ରଖିଚି, ପୁଣି କେବେ ଗଲେ ତୁମ ହାତରେ ଦେବି ।

ତୁମେ ତ ସମ୍ବଲପୁରରେ ରହୁଚ । ଦେଖା ସାକ୍ଷାତ୍‌ରେ ଅସୁବିଧା ହେବ ନାହିଁ ।

ଶୁଭେଚ୍ଛା ନେବ ।

ନମସ୍କାର
ଶୁଭାର୍ଥୀ
ଗଡ଼ନାୟକ

(୨) କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ପତ୍ର

(୧)

ମିଶନ୍ ରୋଡ୍
କଟକ–୭୫୩୦୦୧
ତାରିଖ : ୨୪।୨।୮୦

ପ୍ରିୟ ଶ୍ରୀ ପାଣିଗ୍ରାହୀ,

ପୂର୍ବସଂଖ୍ୟା 'ଦିଗନ୍ତ' ପଠାଇଥିଲୁଁ । ପାଇଥିବେ । ଆପଣଙ୍କ ଚିଠିଟି ସେଥିରେ ପ୍ରକାଶ ପାଇଥିଲା । ଆସନ୍ତା ସଂଖ୍ୟା 'ଦିଗଂତ'ପାଇଁ ଓଡ଼ିଶାର ନୃତ୍ୟକଳା ଓ ସଂଗୀତ ଶାସ୍ତ୍ର ଉପରେ ଲିଖିତ ବିଭିନ୍ନ ଗ୍ରଂଥର ସାରମର୍ମ ଓ ବୈଶିଷ୍ଟ୍ୟ ସଂବଂଧରେ ଏକ ଛୋଟ ସଂଦର୍ଭ ପଠାଇବାକୁ ଅନୁରୋଧ । ଆପଣ ଅନ୍ୟ କି କି ବିଷୟରେ ଲେଖୁଛଂତି ? 'ଦିଗଂତ'କୁ ଲେଖା ପଠାଇବେ । ଲେଖାଗୁଡ଼ିକ ଛୋଟ ହେଲେ ଭଲ ହେବ ।

ଆଶା, ଭଲ ଅଛଂତି ।

ଇତି
ଶୁଭେଚ୍ଛା ସହ
ଆପଣଙ୍କର ସ୍ନେହାଧୀନ
ସଚ୍ଚି ରାଉତରାୟ

(୨)

Mission Road
CUTTACK-753001
January 2, 1981

Dear Shri Panigrahi,

Your article has been published in the current issue of 'Diganta' Which Will be released from the press very soon. Could You Please send me an article on ordisi dance examining how far it is classical ('Shastriya') and it What aspects ? As you see 'Diganta' has now been reduced in size and space. Hence We shall appreciate if the article is not a long one. We also seek your co-operation in making 'Diganta' popular in Sambalpur. We have had no agents there.

Best Wishes,

Your's Sincerely
S. RAUT-ROY.

(୩)

Mission Road
CUTTACK-753001
ଜାନୁୟାରୀ ୧୫, ୮୧'

ପ୍ରିୟ ପାଣିଗ୍ରାହୀ ବାବୁ,

ଆପଣଙ୍କ ଚିଠି ପାଇଁ ଧନ୍ୟବାଦ । ଏ ସଂଖ୍ୟା ଦିଗନ୍ତରେ ଆପଣଙ୍କର "ଓଡ଼ିଶାର ସଙ୍ଗୀତଶାସ୍ତ୍ର" ନାମକ ପ୍ରବନ୍ଧ ପ୍ରକାଶ ପାଇଛି । ଆସନ୍ତା ସଂଖ୍ୟା ମାର୍ଚ୍ଚସୁଦ୍ଧା ପ୍ରକାଶ ପାଇବ । ଏକ ପ୍ରବନ୍ଧ (ଛାପାରେ ୫।୬ ପୃଷ୍ଠା) ପଠାଂନ୍ତୁ । ଦିଗଂତର ସୀମିତ ପରିସର ଯୋଗୁଁ ଏହା ଲେଖିବାକୁ ପଡ଼ିଲା । 'ଦିଗଂତ' ଏଣିକି ନିୟମିତ ଭାବେ ପ୍ରତି ତିନି ମାସରେ ପ୍ରକାଶ ପାଇବ । ସେଥିପାଇଁ ଏକ ବ୍ୟବସ୍ଥାପକ ମଂଡଳୀ ଗଢ଼ାଯାଇଛି । ଦିଗଂତ ପ୍ରକାଶିନୀ ମଧ୍ୟ ଓଡ଼ିଶାର କେତେକ ଅପ୍ରକାଶିତ ପ୍ରାଚୀନ ପୋଥିର ପ୍ରାମାଣିକ ସଂସ୍କରଣ ପ୍ରକାଶ କରିବ, ଆଧୁନିକ ସାହିତ୍ୟ ସହିତ । କିଛି ଅପ୍ରକାଶିତ ପ୍ରାଚୀନ ପୋଥି ଥିଲେ ମୁଖବଂଧ ସହ ଶୁଦ୍ଧପାଠ ପଠାଇପାରନ୍ତି ।

ଗଣେଶ ବୁକ୍ ଏଜେନ୍ସି ଏକ ବିଗତ ସଂଖ୍ୟା ଦିଗଂତର ବିକ୍ରିଟଙ୍କା ବାରଂବାର ପତ୍ର ଦେଇ ନ ପଠାଇବାରୁ ତାଂକୁ ଦିଗଂତ ପଠାଇବା ବଂଦ କରି ଦିଆଯାଇଛି । ଅନ୍ୟ କେହି Agent ନାହାଂତି । ଆପଣ ଜଣକୁ ଠିକ୍ କରି ଦିଅଂତୁ ଯେ କି V.P.P.ରେ ଅନ୍ୟୁନ ୫୦ ଖଂଡ ଦିଗଂତ ନେବେ । ସଂବଲପୁର ଏକ Important କେଂନ୍ଦ୍ର । ସେଠିକି ଦିଗଂତ ଯିବା ଏକାଂତ ଦରକାର ।

ବିଶ୍ୱବିଦ୍ୟାଳୟ ସମ୍ମାନ ଯୋଗୁ ହାର୍ଦ୍ଦିକ ଅଭିନଂଦନ ।

। ଇତି ।

ସ. ରାଉତରାୟ

(୪)

Mission Road
CUTTACK-753001
Dt : 01-02-81

ପ୍ରିୟ ଶ୍ରୀ ପାଣିଗ୍ରାହୀ,

ଦିଗଂତ ପାଇଁ ଜଣେ Agent ଠିକ୍ କରିବାକୁ ଲେଖିଥିଲେ । ଆମେ ତ ଏପର୍ଯ୍ୟନ୍ତ କାହାରିଠୁ କିଛି Order ପାଇଲୁଁ ନାହିଁ । ଶୀଘ୍ର ବ୍ୟବସ୍ଥା କରିବେ ।

ଆସଂତା ସଂଖ୍ୟା ପାଇଁ ଶୀଘ୍ର ଏକ ଛୋଟଲେଖା (ଦିଗଂତର ସୀମିତ ପରିସରକୁ ଚାହିଁ) ପଠାଇବାକୁ ଅନୁରୋଧ । ଆଜି ଡାକରେ ଦିଗଂତ ପଠାଯାଇଛି । ପ୍ରାପ୍ତି ସ୍ୱୀକାର କରିବେ । Agent ବିଷୟ ଜଣାଇବେ ।

ଇତି

ନମସ୍କାର
ଆପଣଙ୍କର
S. Rout Roy.

(୩) ଶ୍ରଦ୍ଧାକର ସୂପକାରଙ୍କ ପତ୍ର :

(୧)

ଭୁବନେଶ୍ୱର
୨୧.୩.୮୫

ପ୍ରିୟ ମହାଶୟ,

ଆପଣଙ୍କର ଅଭିନନ୍ଦନ ପତ୍ର ପାଇଁ ବିଶେଷ ଧନ୍ୟବାଦ । ଆପଣଙ୍କ ଶୁଭେଚ୍ଛା ମୋର କର୍ତ୍ତବ୍ୟ ପଥରେ ପାଥେୟ ହେବ । ଆଶାକରେଁ, କୁଶଳରେ ଥିବେ ।

ଇତି
ଆପଣଙ୍କର
ଗୁଣମୁଗ୍ଧ
ଶ୍ରଦ୍ଧାକର ସୂପକାର

(୪) ପଣ୍ଡିତ ପ୍ରୟାଗଦତ୍ତ ଯୋଷୀଙ୍କ ପତ୍ର :

ଚିଠି ନଂ 171/93
ଖଡ଼ିଆଳ ତା୨୨-୧୧-୯୩

ସମ୍ମାନ୍ୟ ଶ୍ରୀ ଖୁସରୋ ସାହେବ,

ସୁକଲ୍ୟାଣ ହୁଆ ନେବେ ।

ଆପନ୍‌କର୍ ୪-୧୦-୯୩ର ଚିଠି ତ ଠିକ୍ ସମିଆଥି ପାଏଲି । ପଢ଼ିକରି ମନ୍ କେଡ଼େ ବିରସ୍ ହେଇଗଲା । ଆପନ୍‌କର୍ ଚିଠି କେ ଟାକିଛେଁ । କୋଶଲ୍ ନାମ ମା କେ ନିକେ କରନ ବଲି ମନେ ମନେ ପ୍ରାର୍ଥନା କରୁଛେଁ । ଏବେ ଇ'ଜେନ୍ କ୍ରାନ୍ତିଧାରାର୍ ବାନ୍ତିଧାରା ଉପରେ ସମଲପୁର୍‌ନେ ବିକ୍ଷୋଭ ହେଲା ସେଥିନେ ଭି ଆପନ୍‌କର୍ ନାଁ ନାଇଁ ଦେଖିକରି ମନ୍‌ବଡ଼େ ଆତଙ୍କିତ ହେଇକରି ଅଛେ । ମୁଇଁ ଗୁଟେ ପ୍ରତିବାଦ ଲେଖି ସମାଜ, ସମ୍ବାଦ ଆରୁ ଧରିତ୍ରୀକେ ପଠେଇଛେଁ । କେନ୍ ହେଲେଭି ତ ପ୍ରକାଶିତ୍ କର୍‌ବା ବଲି । ଗଲା ମାସେ ହେଲାନ ମୁଇଁ ବଡ଼େ ଧୁକ୍‌ପୁଚ୍ ନେ ଅଛେଁ । ସବୁ ବିକାର ଗୋଟେ ସହନୀୟ ଥିତିନେ ଥିଲେ ଭି ଛାତିର୍ ଧୁକ୍‌ଧୁକୀ ବଡ଼େ ବେନିୟମ୍‌ଥି ଚାଲୁଛେ । ଜଦର୍‌ପି ମାମୁଲୀ ଉଠାବସା ଖିଆପିଆ

ଆଦି କରି ନେଉଛେଁ । ତଥାପି ସବୁବେଳେ ବ୍ୟାକୁଲ୍ ବିବ୍ରତ୍ ଆରୁ ଆଶଙ୍କା ଲାଗି ବିଲ୍‌କୁଲ୍ ବନେ ନାଇଁ ଲାଗ୍‌ବାର୍ । ଚିଠି ଗୁଟେ ଲେଖ୍‌ବାର୍ ଭି କଠିନ୍ ହଉଛେ । କେନ୍‌ସି ଭି ଓଷୋ କାହିଁ ନାଇଁ ପଢ଼ବାର ।

'କୋଶଲୀ ଭାଷା କି ଉପଭାଷା'ର ବଲୀ ଜେନ୍ ପ୍ରବନ୍ଧ ଲେଖ୍‌ଥିଲି ସେଟା 'ଏଷଣା' ପତ୍ରିକାଥ୍ ଇ ଡ଼ିସେମ୍ବର ନେ ପ୍ରକାଶିତ୍ ହେବାବଲି ଖବର୍ ପାଇଛେଁ । କାଏଁ ମନ୍ତବ୍ୟ ସହ ପ୍ରକାଶିତ୍ କରୁଛନ୍ ଦେଖାଜାଉ ।

ବାକିସବୁ ନିଜନିଜର ବାଟେ ଚାଲିଛେ । ତୁରନ୍ତ ଚିଠି ଦେଇ ଚିନ୍ତା ଦୂର୍ କର୍‌ବେ ।

କଲ୍ୟାଣକାମୀ
ଶ୍ରୀ ପ୍ରୟାଗଦତ୍ତ ଜୋଷୀ ।

(୫) ପ୍ରଫେସର ଗୋବିନ୍ଦଚନ୍ଦ୍ର ଉଦ୍‌ଗାତାଙ୍କ ପତ୍ର :

GOPALMAL
SAMBALPUR-768004

(୧)

ତା ୫।୧୧।୧୯୯୬

ପରମ ଶ୍ରଦ୍ଧେୟ ବନ୍ଧୁ !

ପ୍ରଣାମ ।

'ସଙ୍ଗୀତ' ଉପରେ 'ଝଙ୍କାର'ରେ ଆପଣଙ୍କ ପ୍ରବନ୍ଧମାଳାର ପ୍ରଥମ କୁସୁମ କେବେ ଫୁଟିଥିଲା ନିର୍ଦ୍ଦିଷ୍ଟ ମନେ ନାହିଁ; ଅନୁମାନ ତାର କନକ ଜୟନ୍ତୀ ଲାଗି ଆଉ ବେଶୀ ବିଳମ୍ବ ନାହିଁ । 'ଗୀତ ପ୍ରକାଶାଦି' ତିନୋଟି ଗ୍ରନ୍ଥର ସମ୍ପାଦନା ଓ ପ୍ରକାଶନ ତଥା ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ଆପଣଙ୍କ ରଚନା 'ଭାରତୀୟ ସଙ୍ଗୀତ'ର ପ୍ରକାଶକାଳର ରଜତଜୟନ୍ତୀ ବେଳ ବୋଧହୁଏ ହେଲାଣି । ଓଡ଼ିଶାରୁ ପ୍ରାୟ ଦୁଇ ହଜାର କିଲୋମିଟର ଦୂରସ୍ଥ କନଖଳ ସଙ୍ଗୀତ ପ୍ରତିଷ୍ଠାନରେ ଆପଣଙ୍କ କଣ୍ଠ ସଙ୍ଗୀତର ସ୍ୱୀକୃତି ପରେ ମଧ୍ୟ ବିତିଗଲାଣି ଗୋଟାଏ ଯୁଗ । ତେଣୁ ଆଜି ଆପଣଙ୍କର ପ୍ରାୟ ଅଶୀତି ବର୍ଷ ବୟସରେ ଅତି ତରତର ହୋଇ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଯେ ଶାସ୍ତ୍ରୀୟ ସଙ୍ଗୀତରେ ଆପଣଙ୍କ ବିଦ୍‌ବତ୍ତା ନିମିତ୍ତ ଆପଣଙ୍କୁ ପୁରସ୍କାର ଯୋଗ୍ୟ ବୋଲି ବିଚାର କଲେ, ଏହାର କାରଣ ହେଉଛି ଯେ କେହି ଏକାଡେମୀର ନିୟମରେ ମରଣୋତ୍ତର ପୁରସ୍କାର ପ୍ରଦାନର ବ୍ୟବସ୍ଥା ନାହିଁ । ମୋର ଆଜି କେବଳ ମନେ ପଡୁଛି ଡକ୍ଟର ମାନସିଂହଙ୍କ ବକ୍ର ଲେଖନୀର ଭାଷା

– ''ପ୍ରତିଭାର ଅଭିଶାପ ଭୂମି ଉତ୍କଳରେ – ଏ ଅଗ୍ରାହକ ଦେଶରେ''। ପାଣ୍ଡିତ୍ୟର ଆଦର ଏକ ଆକସ୍ମିକ ଦୁର୍ଘଟଣା । ଆପଣଙ୍କ ନିଷ୍ଠା, ଆପଣଙ୍କ ସାଧନାର ଏହି ବିଳମ୍ବିତ ସ୍ୱୀକୃତି ପାଇଁ ଅଭିନନ୍ଦନ ଜଣାଇବାକୁ ଏ ପତ୍ର ଲେଖିବାବେଳେ ମୋର ଦୁଇ ଆଖିର ଜଳଧାରା – ଉପହାରରେ ଆନନ୍ଦର ସୁମିଷ୍ଟ ଶର୍କରା ଯେତେ ଅଛି ଠିକ୍ ସେହି ପରିମାଣରେ ଅଛି ଅବହେଳାର ଅବବୋଧ ଜନିତ ତିକ୍ତତା । ଦୂରରୁ ଏ ହର୍ଷ ବିଷାଦ ଭାରାକ୍ରାନ୍ତ ହୃଦୟର ଅଭିନନ୍ଦନ ଗ୍ରହଣ କରିବେ ।

ସଙ୍ଗୀତ ନାଟକ ଏକାଡେମୀଙ୍କ ସୌଭାଗ୍ୟ ସେମାନେ ଏକ ନିଶ୍ଚିତ ନିନ୍ଦାରୁ ବର୍ତ୍ତିଗଲେ । ଏହା ହିଁ ତାଙ୍କର ଧନ୍ୟତ୍ୱ । ଆଉ ତ ଆମେ ତାଙ୍କୁ ଦୃଷ୍ଟାନ୍ତ ଦେଖାଇ ଗାଳି ଦେଇ ପାରିବୁଁ ନାହିଁ ! ସମଲେଇଙ୍କ ଦୟାରେ ଆପଣଙ୍କ ଉତ୍ତର କାଳର ଦୀର୍ଘ ନିରଳସ ନିରାମୟ ଜୀବନ ବାଣୀ ସେବାରେ ନିବିଷ୍ଟ ହୋଇ ରହିଥାଉ ।

ସ୍ନେହାଧୀନ – ଉଦ୍‌ଗାତା ବାବୁ

ଶ୍ରୀଯୁକ୍ତ ନୀଳମାଧବ ପାଣିଗ୍ରାହୀ

(୨)

GOPALMAL
SAMBALPUR-768004
ତା ୨୮।୧୦।୯୮

ଶ୍ରଦ୍ଧେୟ ବନ୍ଧୁ !

ନମସ୍କାର ନେବେ ।

ଅନେକଦିନ ହେଲା ଦେଖା ସାକ୍ଷାତ୍ ହୋଇନାହିଁ । ଦୂରତା ଅତିକ୍ରମ ଯେଉଁଠି ପ୍ରଶ୍ନ ସେଠି ଆପଣଙ୍କ ଦ୍ୱିଚକ୍ର ସାଧନ ଯୋଗୁଁ ଆପଣଙ୍କ ଯୋଗ୍ୟତା ସ୍ୱୀକାର୍ଯ୍ୟ । କିନ୍ତୁ ଏ ଏକତରଫା ବ୍ୟବସ୍ଥା ଆଦୌ ସମୀଚୀନ ବା ନିର୍ଭରଯୋଗ୍ୟ ନୁହେ । ଏହା ହିଁ ବାସ୍ତବ ସ୍ଥିତି; ତଥାପି ନିରୁପାୟ ଭାବେ ମାନିନେବାକୁ ହେବ ।

ଏ ମଧ୍ୟରେ ବିନୋଦ ପଶାୟତ୍‌ଙ୍କୁ ଭୁବନେଶ୍ୱର ଦୂରଦର୍ଶନର ଦର୍ଶକ ଦରବାରରେ ଦେଖିଲି, ଖୁବ୍ ଖୁସି ହେଲି । ସଙ୍ଗୀତ ନାଟକ ଏକାଡେମୀ ଫକୀର ପଟ୍ଟନାୟକଙ୍କୁ ଲୋକଗୀତ ପୁରସ୍କାର ଦେବା ମଧ୍ୟ ଯଥାର୍ଥ; ଆନନ୍ଦ ଓ ଅଭିନନ୍ଦନ ଜଣାଇଛି ସେମାନଙ୍କୁ । ଗୋଟାଏ ବଡ଼କଥା ମନକୁ ଆସୁଛି; ଆଜ୍ଞା, ଯେ ସେ ବିରୁଦ୍ଧବାଦୀ ଲୋକେ ସତ୍ୟର ସମକ୍ଷରେ ମୁଣ୍ଡ ନୁଆଁଇବାକୁ କ୍ରମେ ବାଧ୍ୟ ହେଉଛନ୍ତି । ଏଇଥିରେ ମୋତେ ଅଧିକ ଆନନ୍ଦ ମିଳୁଛି । ଲୋକଭାଷା, ଲୋକ ସାହିତ୍ୟ, ଲୋକକଳା ଓ

ଲୋକ ସଂସ୍କୃତିର ଯେଉଁ ବୈଶିଷ୍ଟ୍ୟ ଏ ଅଞ୍ଚଳର ନିଜସ୍ୱ ସେ ଏବେ ଆପଣାକୁ ପ୍ରତିଷ୍ଠିତ କରିବାର ଶୁଭବେଳା ବୋଧହୁଏ ଆସିଛି । ଆମ କଳାକାର ଓ ସାହିତ୍ୟ-କାର ଏତେବେଳେ ପୁରସ୍କାର ବିବାଦ ବିସମ୍ବାଦ ଭୁଲି ସାଧନାରେ ଲାଗିପଡ଼ିବା କଥା ।

ଟିଟିଲାଗଡ଼ରୁ ଜଣେ ବାବୁ ଇନ୍ଦ୍ରମଣି ସାହୁଙ୍କ ‘‘କୋଶ୍‌ଲୀ ରାମାୟନ୍’’ର କେତେ ଖଣ୍ଡି ଧରି ଦିନେ ଆସି ପହଞ୍ଚିଲେ । ଆଦ୍ୟକାଣ୍ଡ ଛାପାରେ ପ୍ରାୟ ସତୁରି ପୃଷ୍ଠା ହୋଇଛି । କାଗଜ ବନ୍ଧାଇ । ଷାଠିଏ ଟଙ୍କା ଦାମ୍ ରଖିଛନ୍ତି । ଆଗ୍ରହ ଥିଲା ଇନ୍ଦ୍ରମଣିର ସେ ଲେଖା ଦେଖିବାକୁ । ତେଣୁ ଖଣ୍ଡିଏ କିଣି ରଖିଲି । ଲେଖିଛି, ଅନୁବାଦ କରିଛି ଇନ୍ଦ୍ରମଣି (ସେ ଦିନେ ସ୍କୁଲରେ ମୋର ଛାତ୍ର ଥିଲା); କିନ୍ତୁ ଭାଷା ଅବଶ୍ୟ ଅଛି, କେବଳ ସେତିକି ହିଁ ଅଛି । ହେମଚନ୍ଦ୍ର ବାବୁଙ୍କ ‘‘ରାମ୍‌ରାହା’’ର ଭାଷା ଅଧିକ ସହରିଆ ସମ୍ବଲପୁରୀ; କିନ୍ତୁ ଯେଉଁ କବିଦୃଷ୍ଟି ଅଛି ତାହା ଅତ୍ୟନ୍ତ ହୃଦ୍ୟ । କୋଶ୍‌ଲୀ ରାମାୟନ୍‌ରେ ସେ ଧରଣର କୌଣସି ବିଶେଷତ୍ୱ ନାହିଁ । ତଥାପି ତାଙ୍କର ଉଦ୍ୟମ ଅଛି । ଯେ ଆସିଥିଲେ ସେ କହିଲେ ଯେ ଅର୍ଥ ସଂଗ୍ରହ ତାଙ୍କ ଗସ୍ତର ଉଦ୍ଦେଶ୍ୟ ।

ସେମାନଙ୍କର ‘କୋସ୍‌ଲୀ’ ପ୍ରୌଢ଼ି ପ୍ରଚଣ୍ଡ; ‘ସମ୍ବଲପୁରୀ’ର ବିରୋଧ ତାଙ୍କର ଘୋଷଣା । ତେଣୁ ଉଦ୍ଧତ ଓ ବିସଦୃଶ । ତଥାପି ମନେହୁଏ ସେମାନଙ୍କ ମତ ହିଁ ଯଥାର୍ଥ । ଏ ‘ସମ୍ବଲପୁରୀ’ – ମତବାଦୀମାନେ ତାଙ୍କ ମତକୁ ଗ୍ରହଣ କରିଯିବା ଖୁବ୍ ସଙ୍ଗତ ହୁଅନ୍ତା । ଏଥିରେ ଯେଉଁ ଐକ୍ୟ ଆସନ୍ତା, ତାହା ମୂଳ ‘‘ଭାଷା ସାହିତ୍ୟ’’ – ସଂସ୍କୃତି ପାଇଁ ବଳିଷ୍ଠ ଉପାଦାନ ଯୋଗାଇବାକୁ ସମର୍ଥ ହୁଅନ୍ତା । କିନ୍ତୁ :–

ସମାବର୍ତ୍ତନ ଉତ୍ସବରେ ଯେଉଁମାନେ ଫଟୋ ଉଠାଉଥିଲେ ତାଙ୍କ ପାଖରୁ ଯାହା ସଂଗ୍ରହ କରିଥିଲି, ସେଥିରୁ ଖଣ୍ଡିଏ ପଠାଇ ଦେଉଛି । ଆପଣ ବୋଧହୁଏ ପାଇ ନଥିବେ ଏହି ଭାବନା ଯୋଗୁଁ । ଆପଣଙ୍କ ଆଲ୍‌ବମ୍‌ରେ ରଖିବେ । ଆଉ ଖଣ୍ଡିଏ ପଠାଇ ଦେଉଛି ହେମଚନ୍ଦ୍ରବାବୁଙ୍କ ପାଖକୁ । ମୋର ବିଶ୍ୱାସ, ସେ ଖୁସି ହେବେ ।

ପତ୍ର ଦେବେ ।

ସ୍ନେହାଧୀନ

ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା

—

# ନିର୍ବାଚିତ ଗ୍ରନ୍ଥପଞ୍ଜି

## ପ୍ରାଥମିକ ଉପାଦାନ (ଓଡ଼ିଆ)


ପାଣିଗ୍ରାହୀ, ନୀଳମାଧବ

୧୯୬୫ : ଭାରତୀୟ ସଙ୍ଗୀତ
ସ୍ୱାଧୀନ ପ୍ରେସ୍, ବ୍ରହ୍ମପୁର

୧୯୮୨ : ଗୀତଗୋବିନ୍ଦ
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

୧୯୯୦ : ମହ୍‌ରା ଆର୍ ମହୁ
ତ୍ରିମୂର୍ତ୍ତି କମ୍ପୋଜର୍ସ, ସମ୍ବଲପୁର

୧୯୯୨ : ଓଡ଼ିଶାରେ ଉପକୂଳିଆ ପ୍ରଦେଶ
କେବେ ଓ କାହିଁକି ?
ନିସାନ୍ ସାହିତ୍ୟ ସଂସଦ୍
ମାନେଶ୍ୱର, ସମ୍ବଲପୁର୍

୧୯୯୨ : ଓଡ଼ିଶା ସହିତ ସମ୍ବଲପୁର ମିଶ୍ରଣର
ଅଜ୍ଞାତ ଦିଗନ୍ତ ।
ନିସାନ୍ ସାହିତ୍ୟ ସଂସଦ୍
ମାନେଶ୍ୱର, ସମ୍ବଲପୁର୍

୧୯୯୪ : ଜ୍ୟୋତିର୍ମୟୀ
ଆର୍ଟଏଣ୍ଡ ଆର୍ଟିଷ୍ଟ ପ୍ରେସ୍, ସମ୍ବଲପୁର

୧୯୯୫ : ସଙ୍ଗୀତ କୌମୁଦୀ (ସଂ)
ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ
ଭୁବନେଶ୍ୱର

୧୯୯୫ : ସମଲ୍‌ପୁର୍‌ର କଥା
ଅଗ୍ନିଶିଖା ପ୍ରେସ୍, ସମ୍ବଲପୁର

୧୯୯୬ : ମହାଭାରତ କଥା (ମହାପ୍ରସ୍ଥାନିକ ପର୍ବ)
ପ୍ରକାଶିକା :— ଆଭା ପାଣିଗ୍ରାହୀ
ଗୁଲୁଣ୍ଡା, ସମ୍ବଲପୁର

୧୯୯୬ : ଗୀତଗୋବିନ୍ଦର ସାଙ୍ଗୀତିକ ଦିଗ୍‌ଦର୍ଶନ
ଲାର୍କ ବୁକ୍‌ସ, ଭୁବନେଶ୍ୱର

୨୦୦୧ : ସମଲ୍‌ପୁରି କୋସ୍‌ଲି ବ୍ୟାକରଣ (ସଂ)
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର ।

୨୦୦୨ : ମାହାଭାରତ କଥା (ଚତୁର୍ଥଭାଗ)
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର ।

୨୦୦୫ : ପାଣିଗ୍ରାହୀ ପଦ୍ୟାବଳୀ (ପ୍ରଥମଖଣ୍ଡ)
ଇମ୍‌ପ୍ରେସନ୍ସ, ସମ୍ବଲପୁର

୨୦୦୭ : କୀଚକ୍‌ବିନାଶ୍ ଆର୍ କୌରବ୍ ଦଲନ୍
ଇମ୍‌ପ୍ରେସନ୍ସ, ସମ୍ବଲପୁର

୨୦୧୩ : ଗୀତଗୋବିନ୍ଦ ଓ ଜୟଦେବ
ଅକ୍ଷର, କଲ୍ୟାଣୀନଗର, କଟକ-୧୩ ।

Panigrahi, Nilamadhab

1982 : Geetagovinda of Jayadeva.
Orissa Sahitya Akademi,
Bubaneswar.


—

## ସାହାଯ୍ୟକାରୀ ଉପାଦାନ :

(ଓଡ଼ିଆ ଓ ସମ୍ବଲପୁରୀ)


**ପୁସ୍ତକ ଓ ବିକ୍ଷିପ୍ତ ରଚନା :**

ଆଚାର୍ଯ୍ୟ, ପରମାନନ୍ଦ
୧୯୬୪ : ରାଧାନାଥଙ୍କ ଅନନ୍ୟ ପ୍ରତିଭା
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର
୨୦୦୮ : ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରବନ୍ଧ
(ସଂ) ଡ.ଗଣେଶପ୍ରସାଦ ସାହୁ
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

ଆଚାର୍ଯ୍ୟ, ବୃନ୍ଦାବନ ଚନ୍ଦ୍ର
୧୯୭୦ : ସତ୍ୟବାଦୀ ଯୁଗ (ଦ୍ୱିତୀୟ ସଂସ୍କରଣ)
ଦାସ୍ ବ୍ରଦର୍ସ୍, କଟକ

ଆଚାର୍ଯ୍ୟ, ସୁଦର୍ଶନ
୨୦୦୯ : ଊନବିଂଶ ଶତକର ଦୁଇଟି ବିସ୍ମୃତ
ସାହିତ୍ୟପତ୍ର
(ସଂ) ଉତ୍କଳ ମଧୁପ ଓ ପ୍ରଦୀପ
ପ୍ରକାଶକ :— ପ୍ରଗତି ଉତ୍କଳ ସଂଘ,
ରାଉରକେଲା

ଉଦ୍‌ଗାତା, ଗୋବିନ୍ଦ ଚନ୍ଦ୍ର
୧୯୭୨ (କ) : ନାୟକ ନାୟିକା ଓ ସାହିତ୍ୟିକ ଚରିତ୍ର
ସପ୍ତର୍ଷି ୧/୨, ଫେବୃୟାରୀ ୧୯୭୨
୧୯୭୨ (ଖ) : କାବ୍ୟାଳଂକାର ପ୍ରୟୋଗରେ
ଉପେନ୍ଦ୍ରଭଞ୍ଜଙ୍କ ବୈଶିଷ୍ଟ୍ୟ
ସପ୍ତର୍ଷି ୧/୭, ଜୁଲାଇ ୧୯୭୨
୧୯୭୩ : ପଶ୍ଚିମ ଓଡ଼ିଶାର ଲୋକକଥା
ସପ୍ତର୍ଷି ୨/୧୦, ଅକ୍ଟୋବର ୧୯୭୩
୧୯୭୫ : ଓଡ଼ିଆ କାବ୍ୟରେ ଉପକ୍ରମଣିକାର ଧାରା
ସପ୍ତର୍ଷି ୪/୧୧, ନଭେମ୍ବର ୧୯୭୫
୧୯୮୦ : ଭାରତୀୟ ସମୀକ୍ଷାତତ୍ତ୍ୱ; ଭିତ୍ତି ଓ ବିକାଶ
ଧାରା ସାହିତ୍ୟ ପତ୍ର- (ସାହିତ୍ୟତତ୍ତ୍ୱ
ବିଶେଷାଙ୍କ) ଓଡ଼ିଆ ବିଭାଗ, ରେଭେନ୍‌ସା କଲେଜ ।
୧୯୮୧ : ସାହିତ୍ୟ ପ୍ରସଙ୍ଗ, ସମ୍ବଲପୁର ।
୧୯୮୫ : ସାହିତ୍ୟ ସ୍ରଷ୍ଟା ଓ ସମାଲୋଚକ
ମେହେର ପ୍ରଦୀପ ୨/୫, ଅଗଷ୍ଟ ୧୯୮୫

| | | |
|---|---|---|
| | ୧୯୯୭ : | ଅଳଙ୍କାର-ପ୍ରସଙ୍ଗ (୪ର୍ଥ ସଂ) |
| | (୧୯୭୮) | ଫ୍ରେଣ୍ଡସ୍ ପବ୍ଲିଶର୍ସ୍, କଟକ-୨ |
| କବି, ଅସିତ | ୧୯୯୪ : | ଓଡ଼ିଆ ସହିତ୍ୟ-ସମାଲୋଚନାର ଇତିହାସ<br>ଫ୍ରେଣ୍ଡସ୍ ପବ୍ଲିଶର୍ସ୍, କଟକ-୨ |
| କର, ବାଉରୀବନ୍ଧୁ | ୨୦୧୦ : | ସଂସ୍କୃତି ଓ ମାନବିକ ମୂଲ୍ୟବୋଧ<br>ପ୍ରକାଶକ : ସାରସ୍ୱତ ସାହିତ୍ୟ<br>ସାଂସ୍କୃତିକ ପରିଷଦ, ଯାଜପୁର । |
| କର, ବିଶ୍ୱନାଥ | ୧୮୯୬ : | ବିବିଧ ପ୍ରବନ୍ଧ (ପ୍ରଥମ ସଂସ୍କରଣ)<br>PRINTED AT THE RAY PRESS<br>CUTTACK, 1896<br>ମୂଲ୍ୟ ଦଶ ଅଣା । |
| ଗଡ଼ନାୟକ, ରାଧାମୋହନ | ୧୯୪୦ : | କାଳିଦାସ (ପ୍ରଥମ ମୁଦ୍ରଣ)<br>ଲକ୍ଷ୍ମୀନାରାୟଣ ପ୍ରେସ୍, କଟକ |
| | ୧୯୪୪ : | ବିପ୍ଳବୀ ରାଧାନାଥ (ପ୍ରଥମ ମୁଦ୍ରଣ)<br>ଓଡ଼ିଶା ବୁକ୍ ଏମ୍ପୋରିୟମ୍, କଟକ |
| | ୧୯୫୫ : | ଉତ୍କଳିକା (ପ୍ରଥମ ମୁଦ୍ରଣ)<br>ଓଡ଼ିଶା ବୁକ୍ ଏମ୍ପୋରିୟମ୍, କଟକ |
| | ୧୯୫୯ : | ପଶୁପକ୍ଷୀର କାବ୍ୟ (ପ୍ରଥମ ମୁଦ୍ରଣ)<br>ଦାସବ୍ରଦର୍ସ, ବ୍ରହ୍ମପୁର, କଟକ, ସମ୍ବଲପୁର |
| | ୧୯୬୦ : | ଧୂସର ଭୂମିକା (ପ୍ରଥମ ପ୍ରକାଶ)<br>ରାଜହଂସ ସାହିତ୍ୟ ମନ୍ଦିର,<br>ତେଲେଙ୍ଗା ବଜାର, କଟକ-୧ |
| | ୧୯୬୮ : | ଗଡ଼ନାୟକ ସଞ୍ଚୟନ<br>ଗ୍ରନ୍ଥମନ୍ଦିର, କଟକ |
| | ୧୯୭୧ :<br>(ସଂ)- | ଗଡ଼ନାୟକ ଅଭିନନ୍ଦନ ଗ୍ରନ୍ଥ<br>ଶ୍ରୀଲକ୍ଷ୍ମୀଧର ନାୟକ<br>ପ୍ରଜାତନ୍ତ୍ର ପ୍ରେସ୍, କଟକ |
| | ୧୯୭୪ : | ସୂର୍ଯ୍ୟ ଓ ଅନ୍ଧକାର (ପ୍ରଥମ ମୁଦ୍ରଣ)<br>ଗ୍ରନ୍ଥମନ୍ଦିର, କଟକ-୨ |
| | ୧୯୮୬ : | ହୀରାଖଣ୍ଡର ଗାଥା (ପ୍ରଥମ ପ୍ରକାଶ)<br>ବୁକ୍ସ ଏଣ୍ଡ ବୁକ୍ସ, କଟକ |

୧୯୮୯ : ଜୟଯାତ୍ରା (ପ୍ରଥମ ପ୍ରକାଶନ)
ବୁକ୍ସ ଏଣ୍ଡ ବୁକ୍ସ, କଟକ

ଗଡ଼ତିଆ, ଗଣନାଥ
୧୯୯୫ (?) : ସମ୍ବଲପୁରୀ ଭାଷା ଓ
ସାହିତ୍ୟ ପରିଚୟ
(ପ୍ରଥମଭାଗ)
କରୁଣା ପ୍ରେସ୍, ବରପାଲି
୧୯୯୬ (?) : ସମ୍ବଲପୁରୀ ଭାଷା ଓ
ସାହିତ୍ୟ ପରିଚୟ
(ଦ୍ୱିତୀୟଭାଗ)
କରୁଣା ପ୍ରେସ୍, ବରପାଲି

ଗୁରୁ, ଗଙ୍ଗାଧର
୨୦୧୦ : ବୈଦିକ ତତ୍ତ୍ୱ-ଦର୍ଶନ
ପ୍ରକାଶିକା : ସୁଶ୍ରୀ ରୀତାଞ୍ଜଳି ଗୁରୁ
ରାଜବୋଡ଼ାସମ୍ବର, ପଦ୍ମପୁର

ଜେନା, ବୈରାଗୀ ଚରଣ
୧୯୯୨ : ସୌନ୍ଦର୍ଯ୍ୟ ତତ୍ତ୍ୱ ଓ ଓଡ଼ିଆ କାବ୍ୟରେ
ସୌନ୍ଦର୍ଯ୍ୟ-ଚେତନା
ଓଡ଼ିଶା ବୁକ୍ ଷ୍ଟୋର୍, କଟକ-୨

ଦାଶ, କୁଞ୍ଜବିହାରୀ
୧୯୭୩ : ଲୋକବାଣୀ-ସଞ୍ଚୟନ (ପ୍ରଥମଖଣ୍ଡ)
ପ୍ରକାଶିକା : ଶ୍ରୀମତୀ ପ୍ରେମଲତା ଦାଶ
କଟକ

ଦାଶ, ଗୋପବନ୍ଧୁ
୨୦୦୩ : ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ
(୧ମଖଣ୍ଡ)
(ସଂ) ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ-୨

ଦାଶ, ଗୌରାଙ୍ଗ ଚରଣ
୨୦୦୬ : ସଂସ୍କୃତି, ଜଗତୀକରଣ ଓ ମଞ୍ଚ ରାଜନୀତି
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ-୨
୨୦୦୯ : ବିତର୍କ ଓ ବ୍ୟାଖ୍ୟାନ
ସରସ୍ୱତୀ, ଗୌରୀନଗର, ଭୁବନେଶ୍ୱର

ଦାଶ, ଦେବେନ୍ଦ୍ର କୁମାର
୧୯୮୬ : ଆଧୁନିକ ସାହିତ୍ୟ-ସମାଲୋଚନା-
ସଙ୍କଟ ଓ ସମ୍ଭାବନା
କୋଣାର୍କ ୬୧ତମ ସଂଖ୍ୟା
ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

| | | |
|---|---|---|
| | ୧୯୯୩ : | ଗୋଟିଏ ଫୁଲ ଫୁଟିବାର କାହାଣୀ<br>ମୟୂର ପବ୍ଲିକେସନ୍ସ, ଭୁବନେଶ୍ୱର |
| | ୧୯୯୫ : | ଗଙ୍ଗାଧର କବିତା ଓ କବିଆତ୍ମା<br>ପ୍ରଗତି ଉତ୍କଳ ସଂଘ, ରାଉରକେଲା |
| | ୨୦୦୫ : | ଉତ୍କଳ ସମ୍ମିଳନୀ (ପ୍ରଥମଖଣ୍ଡ)<br>ପ୍ରଗତି ଉତ୍କଳ ସଂଘ, ରାଉରକେଲା |
| ଦାଶ, ନୀଳକଣ୍ଠ | ୧୯୫୮ : | ଓଡ଼ିଆ ଭାଷା ଓ ସାହିତ୍ୟ<br>(ଦ୍ୱିତୀୟ ସଂସ୍କରଣ)<br>ନିଉଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ସ ପ୍ରା:ଲି:<br>ବିନୋଦବିହାରୀ, କଟକ-୨ |
| ଦାଶ, ଶିବପ୍ରସାଦ | ୧୯୬୨ : | ସମ୍ବଲପୁର ଇତିହାସ<br>ବିଶ୍ୱଭାରତୀ ପ୍ରେସ୍, ସମ୍ବଲପୁର |
| ଦାଶ, ସୂର୍ଯ୍ୟନାରାୟଣ | ୧୯୪୮ : | ଓଡ଼ିଆ ସାହିତ୍ୟର ପରିଚୟ<br>(୧ମ ସଂସ୍କରଣ)<br>(ଦ୍ୱିତୀୟଭାଗ)<br>ପ୍ରକାଶକ : ହିନ୍ଦୁସ୍ଥାନ ସାହିତ୍ୟ ମନ୍ଦିର, ପୁରୀ |
| | ୧୯୫୧ : | ଓଡ଼ିଆ ସାହିତ୍ୟର ପରିଚୟ<br>(୨ୟ ସଂସ୍କରଣ)<br>(ପ୍ରଥମଖଣ୍ଡ)<br>ନବଭାରତ ପ୍ରେସ୍, କଟକ-୨ |
| | ୨୦୦୮ :<br>(୧୯୬୭) | ଓଡ଼ିଆ ସାହିତ୍ୟର ଇତିହାସ<br>(ତୃତୀୟ ସଂସ୍କରଣ)<br>(ତୃତୀୟଖଣ୍ଡ)<br>ଗ୍ରନ୍ଥମନ୍ଦିର, କଟକ-୨ |
| | ୨୦୧୦ :<br>(୧୯୬୩) | ଓଡ଼ିଆ ସାହିତ୍ୟର ଇତିହାସ<br>(ପୁନର୍ମୁଦ୍ରଣ)<br>(ପ୍ରଥମଖଣ୍ଡ)<br>ଗ୍ରନ୍ଥମନ୍ଦିର, କଟକ-୨ |
| | ୨୦୧୦ :<br>(୧୯୭୧) | ଓଡ଼ିଆ ସାହିତ୍ୟର ଇତିହାସ<br>(ପୁନର୍ମୁଦ୍ରଣ) (ଚତୁର୍ଥଖଣ୍ଡ) |

| | | |
|---|---|---|
| | | ଗ୍ରନ୍ଥମନ୍ଦିର, କଟକ-୨ |
| | ୨୦୧୦ : | ଉତ୍କଳମଣି ଗୋପବନ୍ଧୁ (ନୂତନ ମୁଦ୍ରଣ) |
| | (୧୯୭୫) | ଗ୍ରନ୍ଥମନ୍ଦିର, କଟକ-୨ |
| | ୨୦୧୧ : | ଦେଶପ୍ରାଣ ମଧୁସୂଦନ (ନୂତନ ମୁଦ୍ରଣ) |
| | (୧୯୭୧) | ଗ୍ରନ୍ଥମନ୍ଦିର, କଟକ-୨ |
| | ୨୦୧୨ : | ଓଡ଼ିଆ ସାହିତ୍ୟର ଇତିହାସ |
| | (୧୯୬୫) | (ପୁନର୍ମୁଦ୍ରଣ) |
| | | ଗ୍ରନ୍ଥମନ୍ଦିର, କଟକ-୨ |
| ଦାଶ, ସ୍ୱପ୍ନେଶ୍ୱର | ୧୯୨୩ : | ସମ୍ବଲ ମନସା |
| (କବିଭୂଷଣ) | | ସାଧନା ପ୍ରେସ୍, ସମ୍ବଲପୁର |
| | | ପ୍ରକାଶକ : ସୋନପୁର ଦରବାର |
| | ୧୯୨୪ : | କୃତଜ୍ଞତା-ପୁଷ୍ପାଞ୍ଜଳି |
| | | ସାଧନା ପ୍ରେସ୍, ସମ୍ବଲପୁର |
| | | ପ୍ରକାଶକ : ସୋନପୁର ଦରବାର |
| | ୧୯୫୬ : | କବିତା ଝଟିକା |
| | | ଗୋସ୍ୱାମୀ ପ୍ରେସ୍, କଟକ-୧ |
| | ୧୯୫୯ : | କବିତା ପେଟିକା |
| | | ନବଜୀବନ ପ୍ରେସ୍, କଟକ-୨ |
| ଦ୍ୱାସ, ଗଗନେନ୍ଦ୍ରନାଥ | ୧୯୯୩ : | ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ |
| | | କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ-୨ |
| ଦାସ, ଦାଶରଥି | ୧୯୭୩ : | କାବ୍ୟ ସମ୍ବାଦ |
| | | ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨ |
| | ୧୯୭୮ : | କବିସୂର୍ଯ୍ୟ କାବ୍ୟବିଭା |
| | | ଅଗ୍ରଦୂତ, କଟକ |
| | ୧୯୯୩ : | ବିବିଧ ପ୍ରସ୍ତାବ |
| | | ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨ |
| | ୧୯୯୬ : | ସାହିତ୍ୟ ବିବେକ |
| | | ଅଗ୍ରଦୂତ, କଟକ-୨ |
| ଦାସ, ମଧୁସୂଦନ | ୨୦୧୦ : | ଉତ୍କଳ ଗୌରବ ମଧୁସୂଦନଙ୍କ |
| (ଉତ୍କଳ ଗୌରବ) | (ସଂ) | ଓଡ଼ିଆ ରଚନାବଳୀ |
| | | ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶ |

| | | |
|---|---|---|
| | | ଡକ୍ଟର ନଗେନ୍ ଦାସ<br>ପ୍ରଗତି ଉତ୍କଳ ସଂଘ, ରାଉରକେଲା |
| ଦାସ, ସୂର୍ଯ୍ୟକାନ୍ତ | ୨୦୦୯ : | ମହାତ୍ମାଗାନ୍ଧି<br>ନବୋଦୟ ପ୍ରକାଶନ<br>ବିନୋଦବିହାରୀ, କଟକ-୨ |
| ଦେବ, ସଚ୍ଚିଦାନନ୍ଦ ତ୍ରିଭୁବନ | ୧୮୯୯ : | ଅଳଙ୍କାର ସାର (୨ୟ ସଂସ୍କରଣ)<br>- - - - - - - - - - - |
| ନନ୍ଦ, ଫଣୀନ୍ଦ୍ର ଭୂଷଣ | ୨୦୦୨ : | ସମ୍ବଲପୁର ହିତୈଷିଣୀ : ଏକ ଅଧ୍ୟୟନ<br>ଅପୂର୍ବା ଭୁବନେଶ୍ୱର |
| ନନ୍ଦଶର୍ମା, ଗୋପୀନାଥ | ୨୦୧୧ :<br>(ସଂ) | ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ (ପ୍ରଥମଭାଗ)<br>ପ୍ରଫେସର ଡ.ସୁଦର୍ଶନ ଆଚାର୍ଯ୍ୟ<br>ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ-୨ |
| ନାଥଶର୍ମା, ବୃନ୍ଦାବନ | ୧୯୩୯ : | ଶତଚିନ୍ତା (ପ୍ରଥମ ସଂସ୍କରଣ)<br>ମୂଲ୍ୟ : ଆଠ ଅଣା ମାତ୍ର |
| ନାୟକ, କ୍ଷେତ୍ରବାସୀ | ୧୯୭୦ : | ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା<br>ଫ୍ରେଣ୍ଡସ୍ ପବ୍ଲିଶ୍ର୍ସ, କଟକ-୨ |
| ପଟ୍ଟନାୟକ, କଇଲାଶ | ୧୯୯୬ :<br>(୧୯୯୦) | ଲୋକ ସାହିତ୍ୟ ଚର୍ଚ୍ଚା<br>କଟକ ଟ୍ରେଡ଼ିଂ କମ୍ପାନୀ, କଟକ-୨ |
| ପଟ୍ଟନାୟକ, କାଳୀଚରଣ (କବିଚନ୍ଦ୍ର) | ୧୯୫୬ : | ଓଡ଼ିଶୀ ସଙ୍ଗୀତ<br>ମେହେର ପ୍ରଦୀପ-ପ୍ରଥମବର୍ଷ-<br>୮ମ ସଂଖ୍ୟା ୧୯୫୬<br>ଗଙ୍ଗାଧର ମେହେର କଲେଜ,<br>ସମ୍ବଲପୁର |
| | ୧୯୫୭ : | ଓଡ଼ିଶୀ ସଙ୍ଗୀତର ରୂପରେଖ<br>ପ୍ରକାଶକ : ଉତ୍କଳ ନୃତ୍ୟ-ସଙ୍ଗୀତ-<br>ନାଟ୍ୟକଳା ପରିଷଦ, କଟକ-୧ |
| | ୧୯୬୧ : | ଚମ୍ପୂ ପ୍ରବେଶ<br>ଇଉନାଇଟେଡ୍ ବୁକ୍ ହାଉସ୍, କଟକ |
| ପଟ୍ଟନାୟକ, ପଦ୍ମଚରଣ | ୧୯୪୦ : | ପ୍ରବନ୍ଧ ପାରିଜାତ<br>ଉତ୍କଳ ସାହିତ୍ୟ ପ୍ରେସ୍, କଟକ |

| | | |
|---|---|---|
| ପଟ୍ଟନାୟକ, ଦେବୀପ୍ରସନ୍ନ | ୧୯୮୪ :<br>(୧୯୬୫) | ସାହିତ୍ୟ ବୀକ୍ଷା (ଦ୍ୱିତୀୟ ସଂସ୍କରଣ)<br>ଗ୍ରନ୍ଥମନ୍ଦିର, କଟକ |
| ପଟ୍ଟନାୟକ, ସୁଧାକର | ୧୯୭୨ : | ସମ୍ବାଦପତ୍ରରୁ ଓଡ଼ିଶାର କଥା<br>ଗ୍ରନ୍ଥମନ୍ଦିର, କଟକ-୨ |
| ପଣ୍ଡା, ଉଜ୍ଜଳବତି | ୨୦୧୨ :<br>(ସଂ) : | ଉଜ୍ଜଳବତି ରାମାୟଣ<br>ଶ୍ରୀ ହୃଦମଣି ପ୍ରଧାନ<br>ପ୍ରକାଶକ : ଅସିମ୍ ପ୍ରଧାନ, ବରଗଡ଼ |
| ପଣ୍ଡା, ଶଶାଙ୍କ ଶେଖର | ୨୦୦୧ : | କବିତା ଗୁଭା<br>ଅନୁଶୀଳନ, ସମ୍ବଲପୁର |
| | ୨୦୦୩ : | ଝୁଲ୍‌ଫୁଲ୍<br>ଚିତ୍ରୋତ୍ପଳା ପବ୍ଲିକେଶନ୍‌ସ୍,<br>ସାଲେପୁର, କଟକ |
| | ୨୦୦୪ : | ପଶ୍ଚିମ ଓଡ଼ିଶାର ଗୀତି କବିତା<br>ଓଡ଼ିଶା ସାହିତ୍ୟ ଏକାଡ଼େମୀ,<br>ଭୁବନେଶ୍ୱର |
| ପତି, ମଧୁସୂଦନ | ୧୯୭୯ : | ଅନୁଶୀଳନ<br>ଅଗ୍ରଦୂତ, କଟକ |
| | ୧୯୮୫ : | ଭାରତୀୟ ଓ ପାଶ୍ଚାତ୍ୟ ସାହିତ୍ୟ<br>ସମାଲୋଚନା ଏକ ତୁଳନାତ୍ମକ ବିଚାର<br>କୋଣାର୍କ-୫୭ତମ ସଂଖ୍ୟା, ୧୯୮୫<br>ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର |
| | ୨୦୦୪ (କ) : | ମହାରାସ : ଉଦ୍‌ଯୋଗ ପର୍ବ<br>କୋଣାର୍କ-୧୩୨ତମ ସଂଖ୍ୟା,<br>ଫେବୃୟାରୀ-ଅପ୍ରେଲ ୨୦୦୪<br>ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର |
| | ୨୦୦୪ (ଖ) : | ମହାରାସଲୀଳା<br>କୋଣାର୍କ-୧୩୩ତମ ସଂଖ୍ୟା,<br>ମଇ-ଜୁନ୍-ଜୁଲାଇ ୨୦୦୪<br>ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର |
| ପତି, ରତ୍ନାକର | ୧୯୫୬ :<br>(୧୯୨୭) | ପ୍ରବନ୍ଧ-ପ୍ରକାଶ (ଚତୁର୍ଥ ସଂସ୍କରଣ)<br>ଭାରତୀପ୍ରେସ୍, କଟକ-୨ |

| | | |
|---|---|---|
| ପାଢ଼ୀ, ବେଣୀମାଧବ | ୧୯୭୧ : | ଧୀ ଓ ଧୀଷଣା<br>କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ |
| ପାଢ଼ୀ, ଶଙ୍କରପ୍ରସାଦ | ୧୯୯୬ :<br>(୧୯୭୪) | ସମ୍ବଲପୁରରେ ଭାଷା ଆନ୍ଦୋଳନ<br>(୨ୟ ସଂ)<br>ଆର୍ଟ୍ ଏଣ୍ଡ ଆର୍ଟିଷ୍ଟ ପ୍ରେସ୍, ସମ୍ବଲପୁର |
| | ୨୦୦୪ :<br>(୧୯୭୩) | ଅକ୍ଷୟ ତାରକା ଚନ୍ଦ୍ରଶେଖର (୨ୟ ସଂ)<br>ପ୍ରକାଶକ–ଗଙ୍ଗାଧର ପାଢ଼ୀ,<br>ଗୋବିନ୍ଦଟୋଲା, ସମ୍ବଲପୁର |
| ପାଣିଗ୍ରାହୀ, କାଳିନ୍ଦୀଚରଣ | ୧୯୮୬ : | କାଳିନ୍ଦୀ ଚରଣ ପ୍ରବନ୍ଧ ସମଗ୍ର<br>କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ–୨ |
| ପାଣିଗ୍ରାହୀ, ହଟକିଶୋର | ୨୦୦୫ : | ସଂସ୍କୃତି ପରିକ୍ରମା<br>ଅପୂର୍ବା, ଭୁବନେଶ୍ୱର |
| ପ୍ରଧାନ, ଅଭିମନ୍ୟୁ | ୧୯୮୮ : | ପୁଷ୍ପୁନି<br>ପ୍ରକାଶକ :– ସମ୍ବଲପୁରୀ କଳା<br>ବିକାଶ କେନ୍ଦ୍ର, ସମ୍ବଲପୁର |
| | ୧୯୮୮ : | ଡାଲ୍‌ଖାଇ<br>ମିଶ୍ର ଛାପାଖାନା, ପଦ୍ମପୁର<br>ରାଜ ବୋଡ଼ାସମ୍ବର |
| | ୧୯୮୯ : | ରସର୍‌କେଲି<br>ପ୍ରକାଶକ :– ସମ୍ବଲପୁରୀ କଳା<br>ବିକାଶ କେନ୍ଦ୍ର, ସମ୍ବଲପୁର |
| ପୁରୋହିତ, ମୀନକେତନ | ୨୦୧୦ : | ସଞ୍ଚାର କଳା<br>ପ୍ରକାଶକ : ପ୍ରସନ୍ନକୁମାର ଦାଶ<br>ପ୍ରଧାନ ଶିକ୍ଷକ, ବରଗଡ଼ |
| ବଳ, ଗଙ୍ଗାଧର | ୧୯୬୪ : | ସାହିତ୍ୟାଲୋକ<br>ନିଉ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ–୧ |
| ବଳ, ନନ୍ଦକିଶୋର | ୧୯୨୭ : | ନିର୍ଝରିଣୀ (ପଞ୍ଚମ ମୁଦ୍ରଣ)<br>ଉତ୍କଳ ସାହିତ୍ୟ ପ୍ରେସ୍, କଟକ |
| | ୧୯୩୩ : | ପ୍ରଭାତ ସଙ୍ଗୀତ (ପ୍ରଥମ ମୁଦ୍ରଣ)<br>ସତ୍ୟବାଦୀ ପ୍ରେସ୍, କଟକ |

୧୯୯୭ : ନନ୍ଦକିଶୋର ଗ୍ରନ୍ଥାବଳୀ (୨ୟ ସଂ)
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨

ବହିଦାର, ସତ୍ୟନାରାୟଣ ୨୦୦୧ : ସତ୍ୟ ନାରାୟଣ ଗ୍ରନ୍ଥାବଳୀ
(ସଂ) ଡ.ଶ୍ୟାମସୁନ୍ଦର ଧର
ଫ୍ରେଣ୍ଡସ୍ ଏମ୍ପୋରିୟମ୍, ସମ୍ବଲପୁର

ବେହେରା, ଚିନ୍ତାମଣି ୧୯୭୫ : ବିଦଗ୍ଧ ପାଠକ
ଜଗନ୍ନାଥ ରଥ, କଟକ
୧୯୯୨ : ସାହିତ୍ୟ ଚିନ୍ତା
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨
୧୯୯୬ : କାବ୍ୟ ଓ କଳାକାର (୪ର୍ଥ ସଂ)
(୧୯୬୬) ଜଗନ୍ନାଥ ରଥ, କଟକ
୧୯୯୭ : ଚିତ୍ର ଓ ଚରିତ୍ର
ଆର୍ଯ୍ୟପ୍ରକାଶନ, କଟକ

ମହାପାତ୍ର, ଚକ୍ରଧର ୨୦୦୯ : ଓଡ଼ିଆ ଗ୍ରାମ୍ୟଗୀତି
ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

ମହାପାତ୍ର, ଖଗେଶ୍ୱର ୧୯୭୨ : ସମାଲୋଚନାର ଦିଗ ଦିଗନ୍ତ
ଫ୍ରେଣ୍ଡର୍ସ୍ ପବ୍ଲିଶର୍ସ, କଟକ-୨

ମାନସିଂହ, ମାୟାଧର ୧୯୪୮ : କବି ଓ କବିତା
ଭାରତୀ ବିହାର, କଟକ
୧୯୫୧ : ଓଡ଼ିଆ ସମାଜ ଓ ସାହିତ୍ୟ
ଭାରତୀ ବିହାର, କଟକ
୧୯୬୯ : ଗୀତା ମାହାତ୍ମ୍ୟ
ଜେ. ମହାପାତ୍ର ଏଣ୍ଡ କୋଃ, କଟକ-୨
୧୯୯୦ : ଓଡ଼ିଆ ସାହିତ୍ୟର ଇତିହାସ
(୧୯୬୭) (ପଞ୍ଚମ ସଂ)
ଗ୍ରନ୍ଥମନ୍ଦିର, କଟକ-୨

ମିଶ୍ର, ଗୋପାଳ ଚନ୍ଦ୍ର ୧୯୬୫ : ଆଧୁନିକ ଓଡ଼ିଆ ସାହିତ୍ୟର ଗତିପଥ
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨
୧୯୭୪ : ଚଳିତ ଶତାବ୍ଦୀରେ ଭାରତୀୟ ସାହିତ୍ୟ
ଯଶୋଧାରା ପ୍ରକାଶନ,

ମିଶ୍ର, ଭାବଗ୍ରାହୀ ୧୯୭୦ : ସାହିତ୍ୟ ଦୃଷ୍ଟି
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨

| | | |
|---|---|---|
| ମିଶ୍ର, ରବିଶଙ୍କର | ୨୦୦୫ : | ଟୀକା ଓ ଟିପ୍ପଣୀ<br>ଏମ୍.ଆର୍.ପ୍ରେସ୍, ବରଗଡ଼ |
| ମିଶ୍ର, ଶଶିଭୂଷଣ<br>(ବୁଢ଼ାମାଷ୍ଟ୍ରେ) | ୧୯୫୯ : | ରଖ୍, ମା ପଲ୍‌ସା ଗୁଛା<br>ଶାନ୍ତି ପ୍ରିଣ୍ଟିଂ ପ୍ରେସ୍, ବରଗଡ଼ |
| | ୧୯୬୦ : | ଗାଉଁଲି ଗପ<br>କଟକ ଟ୍ରେଡିଂ କମ୍ପାନୀ, କଟକ-୨ |
| | ୧୯୬୪ : | ମାଁ, କହ ଗୁଟେ କଥାନି<br>ଟାଉନ୍, ପ୍ରିଣ୍ଟିଂ ପ୍ରେସ୍, ବରଗଡ଼ |
| | ୨୦୦୨ : | ସମ୍ବଲପୁରୀ ରସ୍ କବିତା<br>ସମ୍ପାଦକ ଓ ପ୍ରକାଶକ :–<br>ଶ୍ରୀ ପ୍ରସନ୍ନକୁମାର ଦାଶ<br>ରଙ୍ଗପଡ଼ା, ବରଗଡ଼ |
| ମିଶ୍ର, ଶ୍ରୀନିବାସ | ୧୯୭୮ : | ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ<br>ବିଦ୍ୟାପୁରୀ, କଟକ |
| ମିଶ୍ର, ସଦାଶିବ | ୧୯୮୫ : | ଅର୍ଥ ଓ ଅର୍ଥାନ୍ତର<br>ଗ୍ରନ୍ଥମନ୍ଦିର, କଟକ-୨ |
| | ୧୯୮୯ : | ମାର୍କିନ ପରିକ୍ରମା<br>ଓଡ଼ିଶା ବୁକ୍ ଷ୍ଟୋର୍, କଟକ-୨ |
| | ୧୯୯୮ : | ଶେଷ ସଂଳାପ<br>ଓଡ଼ିଶା ବୁକ୍ ଷ୍ଟୋର୍, କଟକ-୨ |
| ମିଶ୍ର, ସଚ୍ଚିଦାନନ୍ଦ | ୨୦୦୫ : | ବଳଦେବ ରଥ : ସାହିତ୍ୟ ସାଧନା ଓ ସିଦ୍ଧି<br>ନବୋଦୟ ପ୍ରକାଶନ<br>ବିନୋଦବିହାରୀ, କଟକ-୨ |
| | ୨୦୦୬ : | ସାରଳା ଦାସ : ଏକ ଅଧ୍ୟୟନ<br>ଗ୍ରନ୍ଥମନ୍ଦିର, କଟକ-୨ |
| ମେହେର, କେଶବ ଚନ୍ଦ୍ର | ୧୯୭୧ : | ଜୀବନ ଓ ପ୍ରତିଭା<br>ଓଡ଼ିଶା ବୁକ୍ ଷ୍ଟୋର୍, କଟକ-୨ |
| | ୧୯୭୯ : | ସୃଷ୍ଟିର ସ୍ୱର<br>ନାଲନ୍ଦା, କଟକ-୨ |
| | ୧୯୯୨ : | ପ୍ରତିଭା ଓ ପ୍ରତିଭୂ<br>ଓଡ଼ିଶା ବୁକ୍ ଷ୍ଟୋର୍, କଟକ-୨ |

| | | |
|---|---|---|
| ମେହେର, ଗଙ୍ଗାଧର | ୧୯୫୧ : (ସଂ) | ଗଙ୍ଗାଧର ଗ୍ରନ୍ଥାବଳୀ (ପ୍ରଥମ ସଂ) ଭଗବାନ ମେହେର ବରପାଲି |
| ମେହେର, ରଘୁନାଥ | ୨୦୦୯ : | ଉତ୍କଳୀୟ କବି ଜୟଦେବ ଓ ଗୀତ ଗୋବିନ୍ଦ ଏଥେନା ବୁକ୍ସ, ଭୁବନେଶ୍ୱର-୨ |
| | ୨୦୧୨ : | ପଶ୍ଚିମ ଓଡ଼ିଶାର ଢ଼ଗ ଓ ବଖାନି ସାହିତ୍ୟ ଶ୍ୱେତପଦ୍ମା, ଭୁବନେଶ୍ୱର-୨ |
| ମେହେର, ରାଜାରାମ | ୧୯୬୩ : | କିଆ କହତ୍ ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨ |
| | ୧୯୬୫ : | ବଉଲ୍‌କେରା ଧର୍ମଗ୍ରନ୍ଥଷ୍ଟୋର୍, କଟକ-୨ |
| | ୨୦୦୫ : | ରାଜାରାମ ଗ୍ରନ୍ଥାବଳୀ (ପ୍ରଥମଭାଗ) (ସମ୍ବଲପୁରୀ କାବ୍ୟ କବିତା ବିଭାଗ) ରଶ୍ମି କମ୍ପ୍ୟୁଟର୍, ପଦ୍ମପୁର |
| ରଥ, ତାରିଣୀ ଚରଣ | ୧୯୧୬ : | ଉତ୍କଳ ସାହିତ୍ୟର ଇତିହାସ (ପ୍ରଥମ ସଂ) ଉତ୍କଳ ସାହିତ୍ୟ ପ୍ରେସ୍, କଟକ |
| ରାଓ, ମଧୁସୂଦନ | ୨୦୧୧ : (ସଂ) | ଭକ୍ତକବି ମଧୁସୂଦନ ଗ୍ରନ୍ଥାବଳୀ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଗ୍ରନ୍ଥମନ୍ଦିର, କଟକ-୨ |
| ରାଜଗୁରୁ, ଶ୍ୟାମସୁନ୍ଦର | ୧୯୯୪ : (୧୯୬୪) | ପ୍ରବନ୍ଧାବଳୀ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଭୁବନେଶ୍ୱର |
| ରାୟ, ରାଧାନାଥ | ୧୯୯୮ : (ସଂ) | କବିବର ରାଧାନାଥ ଗ୍ରନ୍ଥାବଳୀ (ପ୍ରସନ୍ନକୁମାର ମିଶ୍ର ଓ ଦେବେନ୍ଦ୍ରକୁମାର ଦାଶ) ଗ୍ରନ୍ଥମନ୍ଦିର, କଟକ-୨ |
| ରାୟ, ଶଶିଭୂଷଣ | ୧୯୭୪ : | ପ୍ରବନ୍ଧ ପ୍ରବାହ (ପୁନଃମୁଦ୍ରଣ) ନିଉଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ |
| ଶେଠ, ଖଗେଶ୍ୱର | ୧୯୬୭ : | ଭୋଟ୍ ବିଚାର୍ (୨ୟ ସଂ) ଭାରତୀ ପ୍ରେସ୍, ଟିଟିଲାଗଡ଼ |

| | | |
|---|---|---|
| | ୧୯୭୩ : | ଖଗେଶ୍ୱର ଗ୍ରନ୍ଥାବଳୀ (ପ୍ରଥମଭାଗ) |
| | (୧୯୫୮) | ପୂର୍ଣ୍ଣିମା ପ୍ରିଣ୍ଟର୍ସ, ସମ୍ବଲପୁର |
| | ୧୯୯୩ : | ଖଗେଶ୍ୱର ଗ୍ରନ୍ଥାବଳୀ (ତୃତୀୟଭାଗ) |
| | | (ସମ୍ବଲପୁରୀ କାବ୍ୟ କବିତା) |
| | | ପ୍ରକାଶକ :– ଖଗେଶ୍ୱର ସାହିତ୍ୟ ସମିତି ପଲସଦା |
| ଶେଠ, ଦୀପ୍ତିରଞ୍ଜନ | ୨୦୧୩ : | କବିଭୂଷଣ–ସ୍ୱପ୍ନେଶ୍ୱର ଦାଶ |
| | | ଦିବ୍ୟ ପ୍ରକାଶନୀ, ଭୁବନେଶ୍ୱର |
| ସାମନ୍ତରାୟ, ନଟବର | ୧୯୫୯ : | ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ |
| | | ବାଣୀଭଣ୍ଡାର, କଟକ–୧ |
| | ୧୯୭୯ : | ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର |
| | | ପୃଷ୍ଠଭୂମି, ଭୁବନେଶ୍ୱର |
| | ୧୯୮୩ : | ଓଡ଼ିଆ ସାହିତ୍ୟର ଇତିହାସ |
| | (୧୯୬୪) | ଭୁବନେଶ୍ୱର |
| | ୧୯୯୧ : | ଓଡ଼ିଆ ପଲ୍ଲୀ ସାହିତ୍ୟ |
| | (୧୯୭୦) | ଭୁବନେଶ୍ୱର |
| ସାହୁ, ଖଗେଶ୍ୱର | ୧୯୪୦ : | ଝୀରାକୂଳେ (ପ୍ରଥମ ମୁଦ୍ରଣ) |
| | | ନବଭାରତ ପ୍ରେସ୍, କଟକ |
| | ୧୯୪୨ : | ମାଳିକା (ପ୍ରଥମ ସଂସ୍କରଣ) |
| | | – – – – – – – – – – – |
| | ୧୯୫୦ : | ଜୀବନସାଥୀ (ପ୍ରଥମ ମୁଦ୍ରଣ) |
| | | ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍ |
| | | ବ୍ରହ୍ମପୁର (ଗଞ୍ଜାମ) |
| | ୧୯୫୪ : | ଆଲେଖ୍ୟ–ଦର୍ଶନ (ପ୍ରଥମ ମୁଦ୍ରଣ) |
| | | ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍ |
| | | ବ୍ରହ୍ମପୁର (ଗଞ୍ଜାମ) |
| | ୧୯୫୯ : | ବ୍ରଜ ବିରହ (ପ୍ରଥମ ସଂସ୍କରଣ) |
| | | ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍ |
| | | ବ୍ରହ୍ମପୁର (ଗଞ୍ଜାମ) |
| | ୧୯୬୦ : | ସାଉଁଟାଫୁଲ (ପ୍ରଥମ ସଂସ୍କରଣ) |
| | | ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍ |
| | | ବ୍ରହ୍ମପୁର (ଗଞ୍ଜାମ) |

୧୯୬୧ : ତ୍ୟାଗବୀର (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍
ବ୍ରହ୍ମପୁର (ଗଞ୍ଜାମ)

୧୯୬୩ : ବାଳିବଧ
ଧର୍ମଗ୍ରନ୍ଥଷ୍ଟୋର, କଟକ-୨

ସାହୁ, ଲକ୍ଷ୍ମୀନାରାୟଣ
୧୯୨୧ : ସ୍ତ୍ରୀ ଶିକ୍ଷା (ପ୍ରଥମ ମୁଦ୍ରଣ)
ଉତ୍କଳ ସାହିତ୍ୟ ପ୍ରେସ୍, କଟକ
ପ୍ରକାଶକ : ସୋନପୁର ଦରବାର ।

ସେନାପତି, ଫକୀରମୋହନ
୨୦୦୦ : ଫକୀରମୋହନ ଗ୍ରନ୍ଥାବଳୀ
(ପ୍ରଥମଖଣ୍ଡ)
(ସଂ) ଡଃ. କୃଷ୍ଣଚରଣ ବେହେରା ଓ
ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ-୨

୨୦୦୨ : ଫକୀରମୋହନ ଗ୍ରନ୍ଥାବଳୀ
(ଦ୍ୱିତୀୟଖଣ୍ଡ)
(ସଂ) ଡଃ. କୃଷ୍ଣଚରଣ ବେହେରା ଓ
ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ-୨

୨୦୦୮ : ଫକୀରମୋହନ ଗ୍ରନ୍ଥାବଳୀ
(ତୃତୀୟଖଣ୍ଡ)
(ସଂ) ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ-୨

୨୦୧୦ : ଫକୀରମୋହନ ସେନାପତିଙ୍କ ଆତ୍ମଚରିତ
(ସଂ) ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶ
ନ୍ୟାସ୍‌ନାଲ୍ ବୁକ୍‌ଟ୍ରଷ୍ଟ, ଇଣ୍ଡିଆ

ହସନ୍, କୁମାର
୧୯୮୩ : ସମ୍ବଲପୁରୀ ଲୋକ ସାହିତ୍ୟ
ପ୍ରକାଶକ : ଖଣ୍ଡ କ୍ଷୀରୋଦ ମିଶ୍ର
କେ. କେ. ମିଶ୍ର ଏଣ୍ଡ କୋ
ଖଟ୍‌ବିନ୍ ସାହି, କଟକ - ୭୫୩୦୦୮

—

ପତ୍ରପତ୍ରିକା :

(୧) ଝଙ୍କାର, ୮/୧-ଏପ୍ରିଲ ୧୯୫୬, ବିଷୁବ ବିଶେଷାଙ୍କ ।
(୨) ଝଙ୍କାର, ୯/୫-ଅଗଷ୍ଟ ୧୯୫୭
(୩) ଝଙ୍କାର, ୯/୮-ନଭେମ୍ବର ୧୯୫୭
(୪) ଝଙ୍କାର, ୯/୯-ଡିସେମ୍ବର ୧୯୫୭
(୫) ଝଙ୍କାର, ୯/୧୧-ଫେବୃୟାରୀ ୧୯୫୮
(୬) ଝଙ୍କାର, ୯/୧୨-ମାର୍ଚ୍ଚ ୧୯୫୮
(୭) ଝଙ୍କାର, ୧୦/୩-ଜୁନ୍ ୧୯୫୮
(୮) ଝଙ୍କାର, ୧୦/୬-ସେପ୍ଟେମ୍ବର ୧୯୫୮
(୯) ଝଙ୍କାର, ୧୦/୭-ଅକ୍ଟୋବର ୧୯୫୮
(୧୦) ଝଙ୍କାର, ୧୦/୧୨-ମାର୍ଚ୍ଚ ୧୯୫୯
(୧୧) ଝଙ୍କାର, ୧୧/୧-ଏପ୍ରିଲ୍ ୧୯୫୯, ବିଷୁବ ବିଶେଷାଙ୍କ ।
(୧୨) ଝଙ୍କାର, ୧୧/୨-ମଇ ୧୯୫୯
(୧୩) ଝଙ୍କାର, ୧୧/୩-ଜୁନ୍ ୧୯୫୯
(୧୪) ଝଙ୍କାର, ୧୧/୫-ଅଗଷ୍ଟ ୧୯୫୯
(୧୫) ଝଙ୍କାର, ୧୧/୬-ସେପ୍ଟେମ୍ବର ୧୯୫୯
(୧୬) ଝଙ୍କାର, ୧୧/୭-ଅକ୍ଟୋବର ୧୯୫୯
(୧୭) ଝଙ୍କାର, ୧୧/୮-ନଭେମ୍ବର ୧୯୫୯
(୧୮) ଝଙ୍କାର, ୧୧/୧୧-ଫେବୃୟାରୀ ୧୯୬୦
(୧୯) ଝଙ୍କାର, ୧୨/୧-ଏପ୍ରିଲ୍ ୧୯୬୦, ବିଷୁବ ସଂଖ୍ୟା ।
(୨୦) ଝଙ୍କାର, ୧୨/୨-ମଇ ୧୯୬୦
(୨୧) ଝଙ୍କାର, ୧୨/୩-ଜୁନ୍ ୧୯୬୦
(୨୨) ଝଙ୍କାର, ୧୨/୮-ନଭେମ୍ବର ୧୯୬୦
(୨୩) ଝଙ୍କାର, ୧୨/୧୦-ଜାନୁୟାରୀ ୧୯୬୧
(୨୪) ଝଙ୍କାର, ୧୨/୧୧-ଫେବୃୟାରୀ ୧୯୬୧
(୨୫) ଝଙ୍କାର, ୧୨/୧୨-ମାର୍ଚ୍ଚ ୧୯୬୧
(୨୬) ଝଙ୍କାର, ୧୩/୧-ଏପ୍ରିଲ୍ ୧୯୬୧, ବିଷୁବ ବିଶେଷାଙ୍କ ।
(୨୭) ଝଙ୍କାର, ୧୩/୨-ମଇ ୧୯୬୧
(୨୮) ଝଙ୍କାର, ୧୩/୩-ଜୁନ୍ ୧୯୬୧
(୨୯) ଝଙ୍କାର, ୧୩/୬-ସେପ୍ଟେମ୍ବର ୧୯୬୧
(୩୦) ଝଙ୍କାର, ୧୩/୮-ନଭେମ୍ବର ୧୯୬୧

(୩୧) ଝଙ୍କାର, ୧୩/୧୦–ଜାନୁୟାରୀ ୧୯୬୨
(୩୨) ଝଙ୍କାର, ୧୩/୧୧–ଫେବୃୟାରୀ ୧୯୬୨
(୩୩) ଝଙ୍କାର, ୧୩/୧୨–ମାର୍ଚ୍ଚ ୧୯୬୨
(୩୪) ଝଙ୍କାର, ୧୪/୨–ମଇ ୧୯୬୨
(୩୫) ଝଙ୍କାର, ୧୪/୧୨–ମାର୍ଚ୍ଚ ୧୯୬୩
(୩୬) ଝଙ୍କାର, ୧୮/୨–ମଇ ୧୯୬୬
(୩୭) ଝଙ୍କାର, ୧୯/୨–ମଇ ୧୯୬୭
(୩୮) ଝଙ୍କାର, ୧୯/୪, ଜୁଲାଇ ୧୯୬୭
(୩୯) ଝଙ୍କାର, ୧୯/୫, ଅଗଷ୍ଟ ୧୯୬୭
(୪୦) ଝଙ୍କାର, ୧୯/୬, ସେପ୍ଟେମ୍ବର ୧୯୬୭
(୪୧) ଝଙ୍କାର, ୧୯/୭, ଅକ୍ଟୋବର ୧୯୬୭
(୪୨) ଝଙ୍କାର, ୧୯/୯, ଡିସେମ୍ବର ୧୯୬୭
(୪୩) ଝଙ୍କାର, ୧୯/୧୦, ଜାନୁୟାରୀ ୧୯୬୮
(୪୪) ଝଙ୍କାର, ୧୯/୧୧, ଫେବୃୟାରୀ ୧୯୬୮
(୪୫) ଝଙ୍କାର, ୨୦/୧, ଏପ୍ରିଲ୍ ୧୯୬୮
(୪୬) ଝଙ୍କାର, ୨୦/୨, ମଇ ୧୯୬୮
(୪୭) ଝଙ୍କାର, ୨୦/୫, ଅଗଷ୍ଟ ୧୯୬୮
(୪୮) ଝଙ୍କାର, ୨୦/୬, ସେପ୍ଟେମ୍ବର ୧୯୬୮
(୪୯) ଝଙ୍କାର, ୨୦/୮, ନଭେମ୍ବର ୧୯୬୮
(୫୦) ଝଙ୍କାର, ୨୦/୯, ଡିସେମ୍ବର ୧୯୬୮
(୫୧) ଝଙ୍କାର, ୨୧/୧, ଏପ୍ରିଲ୍ ୧୯୬୯
(୫୨) ଝଙ୍କାର, ୨୧/୪, ଜୁଲାଇ ୧୯୬୯
(୫୩) ଝଙ୍କାର, ୨୧/୭, ଅକ୍ଟୋବର ୧୯୬୯
(୫୪) ଝଙ୍କାର, ୨୧/୧୦–ଜାନୁୟାରୀ ୧୯୭୦
(୫୫) ଝଙ୍କାର, ୨୧/୧୧–ଫେବୃୟାରୀ ୧୯୭୦
(୫୬) ଝଙ୍କାର, ୨୩/୨–ମଇ ୧୯୭୧
(୫୭) ଝଙ୍କାର, ୨୩/୩–ଜୁନ୍ ୧୯୭୧
(୫୮) ଝଙ୍କାର, ୨୩/୪–ଜୁଲାଇ ୧୯୭୧
(୫୯) ଝଙ୍କାର, ୨୩/୭–ଅକ୍ଟୋବର ୧୯୭୧
(୬୦) ଝଙ୍କାର, ୨୩/୯–ଡିସେମ୍ବର ୧୯୭୧
(୬୧) ଝଙ୍କାର, ୨୩/୧୦–ଜାନୁୟାରୀ ୧୯୭୨
(୬୨) ଝଙ୍କାର, ୨୩/୧୧, ଫେବୃୟାରୀ ୧୯୭୨

(୬୩) ଝଙ୍କାର, ୨୬/୨, ମଇ ୧୯୭୪
(୬୪) ଝଙ୍କାର, ୨୬/୩, ଜୁନ୍ ୧୯୭୪
(୬୫) ଝଙ୍କାର, ୨୬/୧୨-ମାର୍ଚ୍ଚ ୧୯୭୫
(୬୬) ଝଙ୍କାର, ୨୮/୭-ଅକ୍ଟୋବର ୧୯୭୬
(୬୭) ଝଙ୍କାର, ୨୮/୧୨-ମାର୍ଚ୍ଚ ୧୯୭୭
(୬୮) ଝଙ୍କାର, ୨୯/୪-ଜୁଲାଇ ୧୯୭୭
(୬୯) ଝଙ୍କାର, ୨୯/୯-ଡିସେମ୍ବର ୧୯୭୭
(୭୦) ଝଙ୍କାର, ୨୯/୧୨-ମାର୍ଚ୍ଚ ୧୯୭୮
(୭୧) ଝଙ୍କାର, ୩୦/୩-ଜୁନ୍ ୧୯୭୮
(୭୨) ଝଙ୍କାର, ୩୦/୬-ସେପ୍ଟେମ୍ବର ୧୯୭୮
(୭୩) ଝଙ୍କାର, ୩୦/୧୧-ଫେବୃୟାରୀ ୧୯୭୯
(୭୪) ଝଙ୍କାର, ୩୦/୧୨-ମାର୍ଚ୍ଚ ୧୯୭୯
(୭୫) ଝଙ୍କାର, ୩୧/୧-ଏପ୍ରିଲ ୧୯୭୯
(୭୬) ଝଙ୍କାର, ୩୧/୪-ଜୁଲାଇ ୧୯୭୯
(୭୭) ଝଙ୍କାର, ୩୧/୯-ଡିସେମ୍ବର ୧୯୭୯
(୭୮) ଝଙ୍କାର, ୩୬/୩-ଜୁନ୍ ୧୯୮୪
(୭୯) କୋଣାର୍କ, ୪୫ଶ ସଂଖ୍ୟା ୧୯୮୧ : ଦୁର୍ଗୋତ୍ସବ ସଂଖ୍ୟା ।
(୮୦) କୋଣାର୍କ, ୪୮ଶ ସଂଖ୍ୟା ୧୯୮୨ :
(୮୧) କୋଣାର୍କ, ୫୦ଶ ସଂଖ୍ୟା ୧୯୮୪ :
(୮୨) କୋଣାର୍କ, ୫୩ଶ ସଂଖ୍ୟା : ୧୯୮୪ ନୀଳକଣ୍ଠ ବିଶେଷାଙ୍କ ।
(୮୩) କୋଣାର୍କ, ୫୪ଶ ସଂଖ୍ୟା ୧୯୮୪
(୮୪) କୋଣାର୍କ, ୫୬ଶ ସଂଖ୍ୟା ୧୯୮୫
(୮୫) କୋଣାର୍କ, ୫୭ଶ ସଂଖ୍ୟା ୧୯୮୫
(୮୬) କୋଣାର୍କ, ୬୦ତମ ସଂଖ୍ୟା ୧୯୮୬
(୮୭) କୋଣାର୍କ, ୬୧ତମ ସଂଖ୍ୟା ୧୯୮୬ :
(୮୮) କୋଣାର୍କ, ୬୨ତମ ସଂଖ୍ୟା ୧୯୮୬
(୮୯) କୋଣାର୍କ, ୬୩ତମ ସଂଖ୍ୟା ୧୯୮୭
(୯୦) କୋଣାର୍କ, ୬୫ତମ ସଂଖ୍ୟା ୧୯୮୭
(୯୧) କୋଣାର୍କ, ୬୬ତମ ସଂଖ୍ୟା ୧୯୮୮
(୯୨) କୋଣାର୍କ, ୬୮ତମ ସଂଖ୍ୟା ୧୯୮୮
(୯୩) କୋଣାର୍କ, ୭୭ତମ ସଂଖ୍ୟା ୧୯୯୦

(୯୪) କୋଣାର୍କ, ୮୦ତମ ସଂଖ୍ୟା ୧୯୯୦ : ଗଣକବି ବୈଷ୍ଣବପାଣି ବିଶେଷାଙ୍କ ।
(୯୫) କୋଣାର୍କ, ୮୫ତମ ସଂଖ୍ୟା ୧୯୯୨
(୯୬) କୋଣାର୍କ, ୮୭ତମ ସଂଖ୍ୟା ୧୯୯୩
(୯୭) କୋଣାର୍କ, ୮୮ତମ ସଂଖ୍ୟା ୧୯୯୩
(୯୮) କୋଣାର୍କ, ୯୩ତମ ସଂଖ୍ୟା ୧୯୯୪
(୯୯) କୋଣାର୍କ, ୯୪ତମ ସଂଖ୍ୟା ୧୯୯୪
(୧୦୦) କୋଣାର୍କ, ୯୯ତମ ସଂଖ୍ୟା ଜାନୁୟାରୀ ୧୯୯୬ : ଲୋକ ସାହିତ୍ୟ ଆଲୋଚନା ବିଶେଷାଙ୍କ ।
(୧୦୧) କୋଣାର୍କ, ୧୦୨ତମ ସଂଖ୍ୟା ଅକ୍ଟୋବର ୧୯୯୬ : ଭୀମଭୋଇ ବିଶେଷାଙ୍କ ।
(୧୦୨) କୋଣାର୍କ, ୧୨୮ତମ ସଂଖ୍ୟା ଫେବୃୟାରୀ–ଏପ୍ରିଲ୍ ୨୦୦୩ : ମାୟାଧର ମାନସିଂହ ବିଶେଷାଙ୍କ ।
(୧୦୩) କୋଣାର୍କ, ୧୨୯ତମ ସଂଖ୍ୟା ୨୦୦୩
(୧୦୪) କୋଣାର୍କ, ୧୩୦ତମ ସଂଖ୍ୟା ଅଗଷ୍ଟ–ଅକ୍ଟୋବର ୨୦୦୩ : ଜଗମୋହନ ଲାଲ ବିଶେଷାଙ୍କ ।
(୧୦୫) କୋଣାର୍କ, ୧୩୨ତମ ସଂଖ୍ୟା ଫେବୃୟାରୀ–ଅପ୍ରେଲ ୨୦୦୪
(୧୦୬) କୋଣାର୍କ, ୧୩୩ ସଂଖ୍ୟା ମଇ–ଜୁନ୍–ଜୁଲାଇ–୨୦୦୪
(୧୦୭) କୋଣାର୍କ, ୧୩୮ ସଂଖ୍ୟା ଅଗଷ୍ଟ–ସେପ୍ଟେମ୍ବର–ଅକ୍ଟୋବର : ୨୦୦୫ ପଣ୍ଡିତ କୃପାସିନ୍ଧୁ ମିଶ୍ର ବିଶେଷାଙ୍କ ।
(୧୦୮) କୋଣାର୍କ, ୧୩୯ ସଂଖ୍ୟା ନଭେମ୍ବର–ଡିସେମ୍ବର–ଜାନୁୟାରୀ–୨୦୦୬ : ଜଗବନ୍ଧୁ ସିଂହ ବିଶେଷାଙ୍କ ।
(୧୦୯) କୋଣାର୍କ, ୧୪୧ତମ ସଂଖ୍ୟା ମେ–ଜୁନ୍–ଜୁଲାଇ–୨୦୦୬ : ଆଧୁନିକ ଓଡ଼ିଆ ସାହିତ୍ୟ ବିଶେଷାଙ୍କ ।
(୧୧୦) କୋଣାର୍କ, ୧୪୨ତମ ସଂଖ୍ୟା ଅଗଷ୍ଟ–ସେପ୍ଟେମ୍ବର–ଅକ୍ଟୋବର : ୨୦୦୬
(୧୧୧) କୋଣାର୍କ, ୧୫୧ତମ ସଂଖ୍ୟା ନଭେମ୍ବର–ଡିସେମ୍ବର–ଜାନୁୟାରୀ : ୨୦୦୯
(୧୧୨) ସପ୍ତର୍ଷି, ୧/୨–ଫେବୃୟାରୀ ୧୯୭୨
(୧୧୩) ସପ୍ତର୍ଷି, ୧/୪–ଏପ୍ରିଲ୍ ୧୯୭୨
(୧୧୪) ସପ୍ତର୍ଷି, ୧/୫–ମଇ ୧୯୭୨
(୧୧୫) ସପ୍ତର୍ଷି, ୧/୭–ଜୁଲାଇ ୧୯୭୨
(୧୧୬) ସପ୍ତର୍ଷି, ୧/୮–ଅଗଷ୍ଟ ୧୯୭୨
(୧୧୭) ସପ୍ତର୍ଷି, ୧/୧୦–ଅକ୍ଟୋବର ୧୯୭୨–ଶାରଦୀୟ ବିଶେଷାଙ୍କ ।
(୧୧୮) ସପ୍ତର୍ଷି, ୧/୧୧–ନଭେମ୍ବର ୧୯୭୨

(୧୧୯) ସପ୍ତର୍ଷି, ୨/୧–ଜାନୁୟାରୀ ୧୯୭୩
(୧୨୦) ସପ୍ତର୍ଷି, ୨/୩–ମାର୍ଚ୍ଚ ୧୯୭୩
(୧୨୧) ସପ୍ତର୍ଷି, ୨/୬–ଜୁନ୍ ୧୯୭୩
(୧୨୨) ସପ୍ତର୍ଷି, ୨/୭–ଜୁଲାଇ ୧୯୭୩
(୧୨୩) ସପ୍ତର୍ଷି, ୨/୮–ଅଗଷ୍ଟ ୧୯୭୩
(୧୨୪) ସପ୍ତର୍ଷି, ୨/୧୧–ନଭେମ୍ବର ୧୯୭୩
(୧୨୫) ସପ୍ତର୍ଷି, ୩/୧–ଜାନୁୟାରୀ ୧୯୭୪
(୧୨୬) ସପ୍ତର୍ଷି, ୩/୨–ଫେବୃୟାରୀ ୧୯୭୪
(୧୨୭) ସପ୍ତର୍ଷି, ୩/୩–ମାର୍ଚ୍ଚ ୧୯୭୪
(୧୨୮) ସପ୍ତର୍ଷି, ୩/୫–ମେ ୧୯୭୪
(୧୨୯) ସପ୍ତର୍ଷି, ୩/୧୦–ଅକ୍ଟୋବର ୧୯୭୪
(୧୩୦) ସପ୍ତର୍ଷି, ୩/୧୧–ନଭେମ୍ବର ୧୯୭୪
(୧୩୧) ସପ୍ତର୍ଷି, ୩/୧୨–ଡ଼ିସେମ୍ବର ୧୯୭୪
(୧୩୨) ସପ୍ତର୍ଷି, ୪/୨–ଫେବୃୟାରୀ ୧୯୭୫
(୧୩୩) ସପ୍ତର୍ଷି, ୪/୩–ମାର୍ଚ୍ଚ ୧୯୭୫
(୧୩୪) ସପ୍ତର୍ଷି, ୪/୬–ଜୁନ୍ ୧୯୭୫
(୧୩୫) ସପ୍ତର୍ଷି, ୪/୮–ଅଗଷ୍ଟ ୧୯୭୫
(୧୩୬) ସପ୍ତର୍ଷି, ୪/୧୦–ଅକ୍ଟୋବର ୧୯୭୫
(୧୩୭) ସପ୍ତର୍ଷି, ୪/୧୨–ଡ଼ିସେମ୍ବର ୧୯୭୫, ୫/୧–ଜାନୁୟାରୀ ୧୯୭୬
(୧୩୮) ସପ୍ତର୍ଷି, ୫/୪–ଏପ୍ରିଲ୍ ୧୯୭୬ : ବିଷୁବସଂଖ୍ୟା ।
(୧୩୯) ସପ୍ତର୍ଷି, ୫/୧୦–ଅକ୍ଟୋବର ୧୯୭୬ : ଶାରଦୀୟ ବିଶେଷାଙ୍କ ।
(୧୪୦) ସପ୍ତର୍ଷି, ୬/୧୦–ଅକ୍ଟୋବର ୧୯୭୭ : ଶାରଦୀୟ ବିଶେଷାଙ୍କ ।
(୧୪୧) ସପ୍ତର୍ଷି, ୬/୧୨–ଡ଼ିସେମ୍ବର ୧୯୭୭
(୧୪୨) ସପ୍ତର୍ଷି, ୭/୧୧–ନଭେମ୍ବର ୧୯୭୮
(୧୪୩) ସପ୍ତର୍ଷି, ୮/୧–ଜାନୁୟାରୀ ୧୯୭୯ :
(୧୪୪) ସପ୍ତର୍ଷି, ୯/୧–ଜାନୁୟାରୀ ୧୯୮୦ :
(୧୪୫) ସପ୍ତର୍ଷି, ୯/୨–ଫେବୃୟାରୀ ୧୯୮୦ :
(୧୪୬) ସପ୍ତର୍ଷି, ୯/୪–୫ ଏପ୍ରିଲ୍ ମଇ ୧୯୮୦ : ଯୁଗ୍ମସଂଖ୍ୟା ।
(୧୪୭) ସପ୍ତର୍ଷି, ୯/୭–ଜୁଲାଇ ୧୯୮୦
(୧୪୮) ସପ୍ତର୍ଷି, ୯/୮–ଅଗଷ୍ଟ ୧୯୮୦ : ଗଙ୍ଗାଧର ମେହେର ଜୟନ୍ତୀ ବିଶେଷାଙ୍କ ।
(୧୪୯) ସପ୍ତର୍ଷି, ୯/୧୧–୧୨ ନଭେମ୍ବର–ଡ଼ିସେମ୍ବର ୧୯୮୦ :

(୧୫୦) ସପ୍ତର୍ଷି, ୧୦/୧–ଜାନୁୟାରୀ ୧୯୮୧
(୧୫୧) ସପ୍ତର୍ଷି, ୧୦/୨–ଫେବୃୟାରୀ ୧୯୮୧
(୧୫୨) ସପ୍ତର୍ଷି, ୧୦/୩–ମାର୍ଚ୍ଚ ୧୯୮୧
(୧୫୩) ସପ୍ତର୍ଷି, ୧୧/୧–ଜାନୁୟାରୀ ୧୯୮୨
(୧୫୪) ସପ୍ତର୍ଷି, ୧୧/୨–ଫେବୃୟାରୀ ୧୯୮୨
(୧୫୫) ସପ୍ତର୍ଷି, ୧୧/୩–ମାର୍ଚ୍ଚ ୧୯୮୨
(୧୫୬) ସପ୍ତର୍ଷି, ୧୧/୪–ଏପ୍ରିଲ୍ ୧୯୮୨
(୧୫୭) ସପ୍ତର୍ଷି, ୧୧/୫–ମଇ ୧୯୮୨
(୧୫୮) ସପ୍ତର୍ଷି, ୧୧/୮–ଅଗଷ୍ଟ ୧୯୮୨
(୧୫୯) ସପ୍ତର୍ଷି, ୧୧/୧୧–ନଭେମ୍ବର ୧୯୮୨ : ସମ୍ବଲପୁରୀ ଭାଷା ବିଶେଷାଙ୍କ ।
(୧୬୦) ସପ୍ତର୍ଷି, ୧୧/୧୨–ଡ଼ିସେମ୍ବର ୧୯୮୨
(୧୬୧) ସପ୍ତର୍ଷି, ୧୨/୧–ଜାନୁୟାରୀ ୧୯୮୩
(୧୬୨) ସପ୍ତର୍ଷି, ୧୨/୨–ଫେବୃୟାରୀ ୧୯୮୩
(୧୬୩) ସପ୍ତର୍ଷି, ୧୨/୩–ମାର୍ଚ୍ଚ ୧୯୮୩
(୧୬୪) ସପ୍ତର୍ଷି, ୧୨/୪–ଏପ୍ରିଲ୍ ୧୯୮୩
(୧୬୫) ସପ୍ତର୍ଷି, ୧୨/୪–୫ ମଇ, ଜୁନ୍ ୧୯୮୩ : ଯୁଗ୍ମସଂଖ୍ୟା ।
(୧୬୬) ସପ୍ତର୍ଷି, ୧୨/୭–ଜୁଲାଇ ୧୯୮୩ :
(୧୬୭) ସପ୍ତର୍ଷି, ୧୨/୮–ଅଗଷ୍ଟ ୧୯୮୩ : ଗଙ୍ଗାଧର ବିଶେଷାଙ୍କ ।
(୧୬୮) ସପ୍ତର୍ଷି, ୧୨/୯–୧୦ ସେପ୍ଟେମ୍ବର–ଅକ୍ଟୋବର ୧୯୮୩ : ଯୁଗ୍ମସଂଖ୍ୟା ।
(୧୬୯) ସପ୍ତର୍ଷି, ୧୨/୧୧–ନଭେମ୍ବର ୧୯୮୩
(୧୭୦) ସପ୍ତର୍ଷି, ୧୩/୬–ଜୁନ୍ ୧୯୮୪ : ବ୍ୟାସକବି ଫକୀର ମୋହନ ବିଶେଷାଙ୍କ ।
(୧୭୧) ସପ୍ତର୍ଷି, ୧୩/୭–ଜୁଲାଇ ୧୯୮୪ :
(୧୭୨) ସପ୍ତର୍ଷି, ୧୩/୮–ଅଗଷ୍ଟ ୧୯୮୪ :
(୧୭୩) ସପ୍ତର୍ଷି, ୧୩/୯–ସେପ୍ଟେମ୍ବର ୧୯୮୪ :
(୧୭୪) ସପ୍ତର୍ଷି, ୧୩/୧୧–ନଭେମ୍ବର ୧୯୮୪ :
(୧୭୫) ସପ୍ତର୍ଷି, ୧୩/୧୨–ଡ଼ିସେମ୍ବର ୧୯୮୪ :
(୧୭୬) ସପ୍ତର୍ଷି, ୧୪/୫–ମଇ ୧୯୮୫
(୧୭୭) ସପ୍ତର୍ଷି, ୧୪/୮–ଅଗଷ୍ଟ ୧୯୮୫ : ମେହେର ବିଶେଷାଙ୍କ ।
(୧୭୮) ସପ୍ତର୍ଷି, ୧୪/୯–ସେପ୍ଟେମ୍ବର ୧୯୮୫ :
(୧୭୯) ସପ୍ତର୍ଷି, ୧୪/୧୦–ଅକ୍ଟୋବର ୧୯୮୫ :
(୧୮୦) ସପ୍ତର୍ଷି, ୧୫/୧–ଜାନୁୟାରୀ ୧୯୮୬ :

(୧୮୧) ସପ୍ତର୍ଷି, ୧୫/୪–ଏପ୍ରିଲ୍ ୧୯୮୬ :
(୧୮୨) ସପ୍ତର୍ଷି, ୧୫/୬–ଜୁନ୍ ୧୯୮୬ :
(୧୮୩) ସପ୍ତର୍ଷି, ୧୫/୮–ଅଗଷ୍ଟ ୧୯୮୬ : ଗଙ୍ଗାଧର ମେହେର ବିଶେଷାଙ୍କ ।
(୧୮୪) ସପ୍ତର୍ଷି, ୧୫/୯–ସେପ୍ଟେମ୍ବର ୧୯୮୬ :
(୧୮୫) ସପ୍ତର୍ଷି, ୧୫/୧୦–ଅକ୍ଟୋବର ୧୯୮୬ :
(୧୮୬) ସପ୍ତର୍ଷି, ୧୬/୧–ଜାନୁୟାରୀ ୧୯୮୭ :
(୧୮୭) ସପ୍ତର୍ଷି, ୧୬/୨–୩ ଫେବୃଆରୀ, ମାର୍ଚ୍ଚ ୧୯୮୭ : ଯୁଗ୍ମସଂଖ୍ୟା ।
(୧୮୮) ସପ୍ତର୍ଷି, ୧୬/୪–ଏପ୍ରିଲ୍ ୧୯୮୭ :
(୧୮୯) ସପ୍ତର୍ଷି, ୧୬/୮–ଅଗଷ୍ଟ ୧୯୮୭ : ଗଙ୍ଗାଧର ମେହେର ଜୟନ୍ତୀ ବିଶେଷାଙ୍କ ।
(୧୯୦) ସପ୍ତର୍ଷି, ୧୬/୧୨–ଡ଼ିସେମ୍ବର ୧୯୮୭ :
(୧୯୧) ସପ୍ତର୍ଷି, ୧୭/୧–ଜାନୁୟାରୀ ୧୯୮୮
(୧୯୨) ସପ୍ତର୍ଷି, ୧୭/୨–ଫେବୃୟାରୀ ୧୯୮୮
(୧୯୩) ସପ୍ତର୍ଷି, ୧୭/୪–ଏପ୍ରିଲ୍ ୧୯୮୮
(୧୯୪) ସପ୍ତର୍ଷି, ୧୭/୫–ମଇ ୧୯୮୮
(୧୯୫) ସପ୍ତର୍ଷି, ୧୭/୮–ଅଗଷ୍ଟ ୧୯୮୮
(୧୯୬) ସପ୍ତର୍ଷି, ୧୭/୯–ସେପ୍ଟେମ୍ବର ୧୯୮୮
(୧୯୭) ସପ୍ତର୍ଷି, ୧୭/୧୧–୧୨–ନଭେମ୍ବର ଡ଼ିସେମ୍ବର ୧୯୮୮
୧୮/୧–ଜାନୁୟାରୀ ୧୯୮୯
(୧୯୮) ପାଞ୍ଚଜନ୍ୟ, ୧/୩–ଦଶହରା ବିଶେଷାଙ୍କ, ୧୯୮୦
(୧୯୯) ପାଞ୍ଚଜନ୍ୟ, ୨/୨–ରଥଯାତ୍ରା ସଂଖ୍ୟା, ୧୯୮୧
(୨୦୦) ପାଞ୍ଚଜନ୍ୟ, ୩/୧–ଜାନୁୟାରୀ ମାର୍ଚ୍ଚ ୧୯୮୨
(୨୦୧) ପାଞ୍ଚଜନ୍ୟ, ୩/୨–୧୯୮୨
(୨୦୨) ପାଞ୍ଚଜନ୍ୟ, ୩/୩–ଦଶହରା ବିଶେଷାଙ୍କ ୧୯୮୨
(୨୦୩) ପାଞ୍ଚଜନ୍ୟ, ୪/୧–ଦୋଳ ସଂଖ୍ୟା ୧୯୮୩
(୨୦୪) ପାଞ୍ଚଜନ୍ୟ, ୪/୨–୧୯୮୩
(୨୦୫) ପାଞ୍ଚଜନ୍ୟ, ୪/୩–ଦଶହରା ବିଶେଷାଙ୍କ ୧୯୮୩
(୨୦୬) ପାଞ୍ଚଜନ୍ୟ, ୬/୨–୩–ଦଶହରା ବିଶେଷାଙ୍କ ୧୯୮୫
(୨୦୭) ପାଞ୍ଚଜନ୍ୟ, ୧୦/୩–ଦଶହରା ବିଶେଷାଙ୍କ ୧୯୮୯
(୨୦୮) ଅଭିନବ ଭଞ୍ଜ ଭାରତୀ–(୧) ଏପ୍ରିଲ୍–ସେପ୍ଟେମ୍ବର–୧୯୯୨
(୨୦୯) ଅଭିନବ ଭଞ୍ଜ ଭାରତୀ–(୨) ଅକ୍ଟୋବର–ମାର୍ଚ୍ଚ–୧୯୯୩ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । } ପ୍ରକାଶକ : ଓଡ଼ିଆ ବିଭାଗ }–ଯୁଗ୍ମସଂଖ୍ୟା ।



**ଶ୍ରୀ ଦୀପ୍ତିରଂଜନ ଶେଠ**

<u>ପ୍ରକାଶିତ ରଚନା :</u>

(୧) ଭାରତୀ-ବିଳାପ : ୧୯୯୭

(୨) ଖଗେଶ୍ୱର ପରିକ୍ରମା : ୨୦୦୫

(୩) କବିଭୂଷଣ ସ୍ୱପ୍ନେଶ୍ୱର ଦାଶ : ୨୦୧୩